ଉତ୍ପଳ ପାଣିଗ୍ରାହୀ

# ହେ ପୃଥିବୀ ବିଦାୟ



# ହେ ପୃଥିବୀ ବିଦାୟ

ଡ଼କ୍ଟର ରମେଶ ପ୍ରସାଦ ପାଣିଗ୍ରାହୀ




ତାରାତାରିଣୀ ପୁସ୍ତକାଳୟ
ପୁରୁଣା ବସ୍‌ଷ୍ଟାଣ୍ଡ୍
ବ୍ରହ୍ମପୁର - ୭୬୦୦୦୧, ଗଞ୍ଜାମ, ଓଡ଼ିଶା

ହେ ପୃଥିବୀ ବିଦାୟ
ନାଟ୍ୟକାର :
ଡଃ. ରମେଶ ପ୍ରସାଦ ପାଣିଗ୍ରାହୀ
ପ୍ରକାଶକ :
ଶ୍ରୀ ଭଗବାନ ପାଢ଼ୀ
ତାରତାରିଣୀ ପୁସ୍ତକାଳୟ
ପୁରୁଣା ବସ୍‌ଷ୍ଟାଣ୍ଡ,
ବ୍ରହ୍ମପୁର-୭୬୦ ୦୦୧, ଗଞ୍ଜାମ, ଓଡ଼ିଶା
ସ୍ୱତ୍ୱାଧିକାରିଣୀ :
ଶ୍ରୀମତୀ ବିଷ୍ଣୁପ୍ରିୟା ପାଣିଗ୍ରାହୀ
ପ୍ରଥମ ପ୍ରକାଶ : ୨୦୦୦
ପ୍ରଚ୍ଛଦ ଶିଳ୍ପୀ :
ଶ୍ରୀ ବସନ୍ତ ପଟ୍ଟନାୟକ
ମୁଦ୍ରଣ :
ମନମୋହନ ଟ୍ରେଡ଼ର୍ସ
ବାଲଜୀପେଣ୍ଠ ଲେନ୍, ବ୍ରହ୍ମପୁର-୨
ମୂଲ୍ୟ—ଟ. ୨୫-୦୦
( ପଚିଶି ଟଙ୍କା ମାତ୍ର )

**HE PRUTHIVI BIDAYA**
Playwright :
**Dr. Ramesh P. Panigrahi**
Publisher :
**Sri Bhagaban Padhy**
**Taratarini Pustakalaya**
Old Bus Stand,
Berhampur-760 001
Ganjam, Orissa

**First Edition : 2000**
Cover Design :
**Sri Basant Pattnaik**
Printed at :
**Man Mohan Traders**
Balajipentho Lane,
Berhampur-2
**Price Rs. 25·00**
**(Rupees Twenty five only)**

ISBN 81-87135-20-4

ମୋର ବହୁ ନାଟକର ପ୍ରିୟ ପାଠିକା

ଓ ପ୍ରେରଣା

ଶ୍ରୀମତି ପ୍ରମିଳା ସାହୁଙ୍କ ହାତରେ

# ହେ ପୃଥିବୀ ବିଦାୟ

ପ୍ରଥମ ଅଭିନୟ : ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁର
ତାରିଖ : ୧୫-୮-୧୯୬୭
ପରିଚାଳନା : ଶ୍ରୀ ବିପିନ ବିହାରୀ ସାହୁ
ମୁଖ୍ୟ ଉପଦେଷ୍ଟା : ଅଧ୍ୟାପକ ନାରାୟଣ ଶତପଥୀ
ନିର୍ଦ୍ଦେଶକ : ଶ୍ରୀ ବିଜୟ କୁମାର ମହାନ୍ତି

ଭୂମିକାରେ :

ନିଶିକାନ୍ତ : ଶ୍ରୀ ବିଜୟ କୁମାର ମହାନ୍ତି
ଗୋପାଳ : ✓ ବାଳକୃଷ୍ଣ ଦାଶ
ରଜା : ପ୍ରବୋଧ
ସ୍ବର : ଅମ୍ବିକା ମିଶ୍ର
ସଜୟ : ସୁଧାଂଶୁ
ଶିବୁ : ଖଲି
ବିଜୟ : ରମେଶ
ବାବୁ : ବାବୁ (ବିଭୁ)
ସୁବ୍ରତ : ✓ ଶ୍ୟାମ ସୁନ୍ଦର
ମଞ୍ଚ : ପ୍ରଦୀପ ପାତ୍ର
ଆଲୋକ : କେଦାର ଆଣ୍ଡା ଓ କିଶୋର
ସଙ୍ଗୀତ : ସୁଧାଂଶୁ ଭୂଷଣ ସିଂ
ମନିକା : ମାନୁ
ଛବି : ଛବି (ଲୀଳାଶ୍ରୀ)
ଉମା : କୁନି

---

ଦ୍ୱିତୀୟ ଅଭିନୟ : ବିକ୍ରମ ଦେବ ମହାବିଦ୍ୟାଳୟ, ଜୟପୁର
ତାରିଖ : ୫/ଫେବୃଆରୀ/୧୯୭୨
ନିର୍ଦ୍ଦେଶନା : ଅଧ୍ୟାପକ ରମେଶ ପ୍ରସାଦ ପାଣିଗ୍ରାହୀ
ମଞ୍ଚ : ଶ୍ରୀ ଗୋପାଳ ଚନ୍ଦ୍ର ପଟ୍ଟନାୟକ
ବି . ଦ୍ର. : ଏହି ଅଭିନୟଟି କେବଳ ମହାବିଦ୍ୟାଳୟର ଛାତ୍ରମାନଙ୍କ ଦ୍ୱାରା ଅଭିନୀତ
ଅଭିନୟରେ : କୃଷ୍ଣା, ଗୀତା, ପ୍ରୀତି, ଏଞ୍ଜେଲିନା, ଚିନ୍ମୟୀ, ଜ୍ୟୋତ୍ସ୍ନା, ବିଦ୍ୟୁତ, ସଞ୍ଜୁ ପ୍ରଭୃତି
ସ୍ମାରକ ଓ ଆଲୋକ : ଶ୍ରୀ ହର୍ଷ ମିଶ୍ର
ପରିଚାଳନା/ଶୃଙ୍ଖଳା : ସୁବାସ ଚନ୍ଦ୍ର ମିଶ୍ର

—୦—

# ନାଟକର ଚରିତ୍ର

ନିଶିକାନ୍ତ : ଜନୈକ ଅଧ୍ୟାପକ

ସଞ୍ଜୟ : ଜନୈକ I.A.S. ଅଫିସର

ଗୋପାଳ : ସଞ୍ଜୟଙ୍କ ଚାକର

ସ୍ୱର : ନିଶିକାନ୍ତଙ୍କ ବଡ଼ ପୁଅ

ସୁବ୍ରତ : ସ୍ୱରର ବନ୍ଧୁ

ବିଜୟ : ସଞ୍ଜୟ ଓ ମଲ୍ଲିକାଙ୍କ ବନ୍ଧୁ

ରାଜା : ସଞ୍ଜୟଙ୍କ ପୁଅ

ବାବୁ : ନିଶିକାନ୍ତଙ୍କ ସାନ ପୁଅ

ମଲ୍ଲିକା : ସଞ୍ଜୟଙ୍କ ସ୍ତ୍ରୀ

ଉମା : ନିଶିକାନ୍ତଙ୍କ ସ୍ତ୍ରୀ

ରୁବି : ସଞ୍ଜୟଙ୍କ ବଡ଼ ଝିଅ

—o—

# ମୁଖବନ୍ଧ

ଏ ମୁଖବନ୍ଧର ଆରମ୍ଭ ହେବା କଥା ପୁସ୍ତକମେଳା ପୁରସ୍କାର ବିଜେତା ଏବଂ ତାରତାରିଣୀ ପୁସ୍ତକାଳୟର ମୁଖ୍ୟ ଶ୍ରୀ ଭଗବାନ ପାତ୍ରୀଙ୍କ ପାଖରୁ । ତାଙ୍କର ଉଦ୍ୟମ ଏବଂ ଅନୁକମ୍ପା ବିନା ଏ ନାଟକଟି ପାଠକ/ଦର୍ଶକମାନଙ୍କ ପାଖରେ ପହଞ୍ଚିପାରି ନଥାନ୍ତା । ନାଟକ ଗୁଡ଼ିଏ ଲେଖିବା ଓ ମଞ୍ଚସ୍ଥ କରିବାରେ ମୋର ଯେଉଁ ଆଗ୍ରହ ତାହା ପ୍ରକାଶ କଲାବେଳକୁ ନଥାଏ । କାରଣ ନାଟକଟିଏ ମଞ୍ଚସ୍ଥ ହେଲାବେଳକୁ ନିର୍ଦ୍ଦେଶକ, ଅଭିନେତା ଏବଂ ଆଲୋକଶିଳ୍ପୀମାନଙ୍କ ଦ୍ୱାରା ଏତେ ସଂଶୋଧନର ଶିକାର ହୋଇଥାଏ ଯେ ପାଣ୍ଡୁଲିପିଟିର ଅବସ୍ଥା ପ୍ରକାଶ ଉପଯୋଗୀ ହୋଇ ରହିନଥାଏ । ବିଚ୍ଚର ନାଟ୍ୟକାରର ପାଣ୍ଡୁଲିପିଟିକୁ ଦଳର ବାକ୍ସ ଭିତରୁ "ଛିନ୍‌ଛତର" ଅବସ୍ଥାରୁ ଉଦ୍ଧାର କରି ପ୍ରକାଶଯୋଗ୍ୟ ସାହିତ୍ୟ ଅବସ୍ଥାକୁ ଅଣାଯାଇଥାଏ ।

କିନ୍ତୁ ପ୍ରକାଶ ହେଲା ପରେ ମଧ୍ୟ ତାହା ସାହିତ୍ୟ ପଦବାଚ୍ୟ ହୁଏ ନାହିଁ । ଏଥିପାଇଁ ଓଡ଼ିଶାରେ ମୁଖ୍ୟତଃ କବିମାନେ ଦାୟୀ । ଭିତରେ ସନ୍ତୁଳି ହେଉଥିବା ଗୋଟିଏ ବିକଳ ମନର ଭାବକୁ ପ୍ରକାଶ କରିବାପାଇଁ ଭାଷା ଖୋଜୁ ଖୋଜୁ ଭାବ ଲୁଚିଯାଉଥାଏ ଏବଂ ଭାବକୁ ଚେଙ୍ଗମାଛ ପରି ଧରୁ ଧରୁ ଭାଷାଟି କଲମ ମୁନରୁ ଖସି ଯାଉଥାଏ । ତଥାପି ପ୍ରବଳ ଆୟୋଜନ ଏବଂ ଆର୍ଥିକ ପ୍ରକଳ୍ପ ତିଆରି କରି କବି ପ୍ରକାଶକ ପାଖରେ ପହଞ୍ଚିଯାଏ । ପ୍ରକାଶକ ତାକୁ କାଗଜ ଖର୍ଚ୍ଚ ନାଁରେ କିଛି ପଇସା ମାଗି ନେଇଗଲା ପରେ ସୁଦୃଶ୍ୟ ପୁସ୍ତକଟିଏ କରି ଚାରିଗୁଣ ଅଧିକ ଦାମ୍ ରଖି ରାମମୋହନ ଲାଇବ୍ରେରୀକୁ ବିକେ ଓ ସାହିତ୍ୟ/ପ୍ରକାଶନ ଶିଳ୍ପ ଚାଲେ ! ଗଳ୍ପ ଓ ଉପନ୍ୟାସ ଲେଖକମାନେ ମଧ୍ୟ ସାହିତ୍ୟିକ ଏବଂ ଉପରୋକ୍ତ ସହଜ ପ୍ରଣାଳୀରେ ସେମାନେ ଲେଖକ ହୁଅନ୍ତି । ନାଟକ କ୍ଷେତ୍ରଟା ଅଲଗା । ଏହାକୁ ସତରେ ପାଠକମାନେ ପଢ଼ନ୍ତି ଏବଂ ଗାଁ କିମ୍ବା କ୍ଲବ୍‌ରେ ମଞ୍ଚସ୍ଥ କରିବାକୁ ନାଟକଟି ଉପଯୁକ୍ତ କି ନାହିଁ ବିଚାର କରିବାକୁ ନାଟକଟିକୁ ଚାରିପାଞ୍ଚ ଜଣ ପଢ଼ନ୍ତି । ମଞ୍ଚସ୍ଥ ହେଲାବେଳକୁ ଚାରିପାଞ୍ଚ କପି କିଣାଯାଏ ।

ଏଣୁ ନାଟକର ମାର୍କେଟ ଭଲ । କିନ୍ତୁ କବି ଓ ଗାଳ୍ପିକମାନେ ନାଟକକୁ ସାହିତ୍ୟ ବୋଲି ଗ୍ରହଣ କଲାବେଳେ କୁଣ୍ଠା ପ୍ରକାଶ କରନ୍ତି । ୩୭ ବର୍ଷର ନାଟ୍ୟକାର ଜୀବନରେ ମୁଁ ଥରେ ଅଧେ ହୁଏତ ସ୍ୱୀକୃତି ପାଇଥିବି ସାହିତ୍ୟିକ ଭାବେ । ଅନ୍ୟଥା ନୁହେ । ଘଟଣାଟି ମତେ ବାରମ୍ବାର ଆଘାତ କରିଛି ଏବଂ ମୋ' ଭିତରର ଅହଂକୁ ଉତ୍‌କ୍ଷିପ୍ତ କରିଛି ।

ଉତ୍‌କ୍ଷିପ୍ତ ହେଲେ ଅଯଥା ବ୍ଲଡ୍ ପ୍ରେସର ବଢ଼େ । ତେଣୁ ନାଟ୍ୟକାରକୁ କାହିଁକି ସାହିତ୍ୟିକ ରୂପେ ସ୍ୱୀକୃତି ଦିଆଯାଉନାହିଁ ସେ ସମ୍ପର୍କରେ ମୋର ଅନ୍ତରଙ୍ଗ ବନ୍ଧୁମାନଙ୍କ ସାଙ୍ଗରେ ଆଲୋଚନା କରେ । ଆଲୋଚନା ବେଳେ ଜଣାଗଲା ଯେ

ସ୍ୱାଧୀନୋତ୍ତର କାଳରେ ପାଖାପାଖି ଏମ୍. ଏ. ପଢ଼ିଥିବା ଲୋକେ କବିତା ଲେଖୁଥିଲା ବେଳେ ନାଟକ ଲେଖିବା ଲୋକମାନଙ୍କର ସେପରି ଶିକ୍ଷାଗତ ଯୋଗ୍ୟତା ନାହିଁ । ଏଣୁ ନାଟ୍ୟକାର ଜଣେ ଅଧମ ଶ୍ରେଣୀର ସାହିତ୍ୟିକ । ଦ୍ୱିତୀୟରେ ଜଣାଗଲା ଯେ ନାଟକ ଲେଖିବା ପାଇଁ ଗଳ୍ପ-ଉପନ୍ୟାସ ଲେଖକଙ୍କର ଜ୍ଞାନ ଏବଂ ବାଚ୍ୟାନୁଭୂତି ନିତାନ୍ତ ଆବଶ୍ୟକ । କିନ୍ତୁ ତା'ଠୁ ଅଧିକ ଆବଶ୍ୟକ ଆହୁରି ଅନେକ ବିଦ୍ୟା । ଯଥା—ତାଙ୍କର ମଞ୍ଚ ସମ୍ପର୍କରେ ଜ୍ଞାନ ଆବଶ୍ୟକ, କେଉଁ ପ୍ରକାର ମଞ୍ଚରେ ନାଟ୍ୟ ଉପସ୍ଥାପନାର କେଉଁ କେଉଁ ସୁବିଧା ଅଛି, ଜାଣିବା ନିତାନ୍ତ ଆବଶ୍ୟକ । ଯଦି ଚିତ୍ରପଟ ମଞ୍ଚ ପାଇଁ ନାଟକ ଲେଖାଯିବ, ନାଟ୍ୟକାର ଜାଣିବା ଉଚିତ ଚରିତ୍ରମାନଙ୍କର ପ୍ରବେଶ, ଉପସ୍ଥିତି ଓ ପ୍ରସ୍ଥାନର ବାଟ । ନାଟ୍ୟକାର ଜାଣିବା ଉଚିତ, ଯେଉଁ ସେଟ୍ ବ୍ୟବହାର କରାଯିବ ତାହା ପ୍ରକୃତିବାଦୀ (naturalist c), ଅଭିବ୍ୟଞ୍ଜନାବାଦୀ (expressionistic), ଭାବବ୍ୟକ୍ତବାଦୀ (impressionistic), ଅତିବାସ୍ତବବାଦୀ (surrealistic), ଚିତ୍ରବାସ୍ତବବାଦୀ (photo-realistic), ପ୍ରତୀକବାଦୀ (symbolic), ଦୃଶ୍ୟ-ବିମ୍ବବାଦୀ (imagistic) ନା ଏ ସବୁର କିଛି କିଛି ସମାହାର । ତା' ହେଲେ ମଞ୍ଚଟିକୁ ଅଭିନେତା/ଅଭିନେତ୍ରୀମାନେ କିପରି ବ୍ୟବହାର କରିବେ ନାଟ୍ୟକାର ନ ଜାଣିଲେ ଦୃଶ୍ୟକଳ୍ପନା କରିପାରିବ ନାହିଁ । ଯଦି ନାଟକଟି ଭରତଲୀଳା କିମ୍ବା ଯାତ୍ରା-ମଞ୍ଚ ପରି ଶୂନ୍ୟସ୍ଥାନଟିଏ ହୋଇଥିବ ତା' ହେଲେ ତାହାର ପରିକଳ୍ପନା ଅଲଗା ହେବ । ମଞ୍ଚଟି ଚିତ୍ରପଟ ମଞ୍ଚ ହେବ ନା ପେଟିକା ମଞ୍ଚ (Box Set) ହେବ, ତାହା ମଧ୍ୟ ଜାଣିବା ଆବଶ୍ୟକ ଏବଂ ଆବଶ୍ୟକ ସେଇଠି ଜାଣିବା, କେଉଁ ପ୍ରକାର ଆଲୋକ ବ୍ୟବହାର କରାଯିବା ଉଚିତ ।

ବିଦେଶୀ ବିଜ୍ଞଜନମାନେ କହୁଛନ୍ତି ନାଟକଟା "ଅଡ଼ିଓ-ଭିଜୁଆଲ୍" (ଶ୍ରବଣ ଓ ଦର୍ଶନର ମିଶ୍ରିତ) କଳା । ଏଣୁ ସଂଳାପ ଅପେକ୍ଷା ଏଠାରେ ଆଲୋକ ସମ୍ପାତ ଏବଂ ଆବହ ସଙ୍ଗୀତ ପରିକଳ୍ପନା ଦ୍ୱାରା ଅଧିକ କଥା କହିହୁଏ । ଓଡ଼ିଶାର ନିର୍ଦ୍ଦେଶକ, ଆଲୋକ ସମ୍ପାତକାରୀ, ସଙ୍ଗୀତ ପରିଚାଳକ ଓ ଶବ୍ଦଯନ୍ତ୍ରୀମାନେ ସମ୍ପୂର୍ଣ୍ଣ ଦାୟିତ୍ୱହୀନ । ଏପରିକି ୨୦୦୦ ମସିହା ଜୁନ୍ ମାସର ଗୋଟିଏ ରବୀନ୍ଦ୍ର ମଣ୍ଡପ ନାଟକରେ ସଙ୍ଗୀତ ମହାବିଦ୍ୟାଳୟର ପିଲାମାନେ ଅଭିନୟ କରୁଥିବା ବେଳେ ସଙ୍ଗୀତ ପରିଚାଳକ ଗୋଟେ ଫଟା ଢ଼ୋଲକୁ ବାଡ଼ଉଥିଲେ । ଏହି ଲେଖକ ପରେ ଯାଇ ପରୀକ୍ଷା କରି ଆସିଚି ଢ଼ୋଲଟିକୁ । କ'ଣ ବିଦ୍ୟୁତ୍ ସାମଗ୍ରୀ ଖଞ୍ଜାହେବ ଏବଂ ଝୁଲିହେବ ଆଲୋକ ମିସ୍ତ୍ରୀଟି ଜାଣେ । କେମିତି ପରିଚାଳନା କଲେ ମଞ୍ଚ ଉପରେ ଅଭିନେତା/ଅଭିନେତ୍ରୀମାନେ ତିଆରି କରୁଥିବା ଦୈହିକ ସ୍ଥାପତ୍ୟ ଗୁଡ଼ିକ ମଧ୍ୟରୁ ଅଧିକ ନାନ୍ଦନିକତା ଫୁଟି ଉଠିବା ସଙ୍ଗେ ସଙ୍ଗେ ନାଟକଟି ଶୂନ୍ୟସ୍ଥାନରେ ଲେଖା ହୋଇଥିବା କବିତାଟିଏ ପରି ମନେ-ହେବ ତାହା ଅନ୍ୟମାନେ ଜାଣିନଥିବାରୁ ନିଜେ ନାଟ୍ୟକାର ଏଗୁଡ଼ିକ ଜାଣିଥିବା ଆବଶ୍ୟକ । ଗତ ୩୭ ବର୍ଷର ନାଟକ ଲେଖା ଜୀବନରୁ ମୁଁ ଏୟା ଶିଖିଛି ।

ଗୋଟେ କବି, ଗୋଟେ ଦେ ଲେଖକ କିମ୍ବା ଗୋପୀନାଥ ମହାନ୍ତିଙ୍କୁ ଏଗୁଡ଼ିକ ଶିଖିବା ଆବଶ୍ୟକ ହୋଇନଥିଲା । ଗୋଟେ ରମାକାନ୍ତ ରଥ କିମ୍ବା ସୀତାକାନ୍ତ ମହାପାତ୍ର ଲବି କରି ଯେତେ ପୁରସ୍କାର ପାଉଥିଲେ ସୁଦ୍ଧା ଏ ଗୁଡ଼ିକ ଜାଣିବା ତାଙ୍କ ପାଇଁ ଆବଶ୍ୟକ । ଏପରିକି ଜଣେ ପ୍ରତିଭା ରାୟ ଏବଂ ବିଭୂତି ପଟ୍ଟନାୟକ ମଧ୍ୟ ଏଗୁଡ଼ିକ ନ ଜାଣି ଲୋକପ୍ରିୟ ହୋଇ ପାରିବେ । ଏଣୁ ନାଟକ ଲେଖିବା ପାଇଁ ଖୁବ୍ କମ୍ ସଂଖ୍ୟକ ଓଡ଼ିଆ ବାହାରୁଛନ୍ତି ଏବଂ ତାକୁ ପଢ଼ି ବୁଝେଇବା ପାଇଁ କମ୍ ସଂଖ୍ୟକ ଅଧ୍ୟାପକ ଅଛନ୍ତି । ବର୍ଷ ବର୍ଷ ଧରି ନାଟକ ସମ୍ପର୍କରେ ସମାଲୋଚନା ପୁସ୍ତକ ଲେଖାଯାଉ ନାହିଁ । ପି. ଏଚ୍. ଡି. ନାଁରେ ଯେଉଁ ସବୁ ପ୍ରବନ୍ଧ ଲେଖା ଯାଉଅଛି ସେଗୁଡ଼ିକ ପ୍ରକାଶିତ ହେଉନାହିଁ ।

ଅତଏବ ଗତ ୩୭ ବର୍ଷ ଭିତରେ ଓଡ଼ିଆ ନାଟକକୁ ନଷ୍ଟ କରିବା ପାଇଁ ଯେଉଁ ଅଦମ୍ୟ ଚେଷ୍ଟା କରାଯାଇଅଛି ଏବଂ ନାଟକକୁ ସାହିତ୍ୟ ପଦବାଚ୍ୟ ନ କରିବା ପାଇଁ ଯେଉଁ ଲବି ଚାଲିଛି ତା'ର ଉଦ୍ୟୋକ୍ତାମାନଙ୍କ ସମ୍ପର୍କରେ ଏଇ ନାଟ୍ୟକାରର ଜାଣିବାକୁ ଇଚ୍ଛା ହୋଉଚି । ଏହାର କାରଣ ହେଲା, ଏହି ନାଟ୍ୟକାର ପ୍ରଥମ ପର୍ଯ୍ୟାୟରେ ଜଣେ ବାସ୍ତବବାଦୀ ଓ ନବ୍ୟବାସ୍ତବବାଦୀ ନାଟ୍ୟକାର ଭାବେ ୧୯୬୩ରେ ଜୀବନ ଆରମ୍ଭ କଲାବେଳେ ବିଭିନ୍ନ ନିର୍ଦ୍ଦେଶକ ଏବଂ ଅଭିନେତା ବନ୍ଧୁମାନଙ୍କଠାରୁ ଅଭିନୟ ମଧ୍ୟ ଶିଖିଚି । ସଙ୍ଗୀତ ମଧ୍ୟ ଶିକ୍ଷା କରିଛି । ମୁଁ ନିଜେ ଏକଶତରୁ ଊର୍ଦ୍ଧ୍ୱ ସଙ୍ଗୀତରେ ସ୍ୱର-ରୋପଣ କରିଛି ଏବଂ ବିଭିନ୍ନ କଲେଜର ସମବେତ ସଙ୍ଗୀତ ରୂପରେ ସେଗୁଡ଼ିକ ପରିବେଷିତ ହୋଇଛି । ତାନିଦ୍ରା ପାନୀୟଜଳ ପ୍ରକଳ୍ପ ପାଇଁ ମୁଁ ନିଜେ ୨୦ଟି କର୍ମ ସଙ୍ଗୀତ ରଚନା କରି ସେଗୁଡ଼ିକର ସଙ୍ଗୀତ ନିର୍ଦ୍ଦେଶନା ଦେଇ କ୍ୟାସେଟ ବାହାର କରିଛି । ଓଡ଼ିଶାର ବିଭିନ୍ନ ସଙ୍ଗୀତ ବିଦ୍ୟାଳୟ ସହିତ ସଂପୃକ୍ତ ରହିବାରୁ ମଝିରେ ମଝିରେ ନୃତ୍ୟନାଟକ ନିର୍ଦ୍ଦେଶନା ଦେବାର ସୁଯୋଗ ପାଇଛି । ଅବଶ୍ୟ, ଶାସ୍ତ୍ରୀୟ ଗୁରୁମାନଙ୍କ ସାହାଯ୍ୟରେ । ନାଟ୍ୟକାର ଜୀବନର ଏହା ହେଉଛି ଦ୍ୱିତୀୟ ପର୍ଯ୍ୟାୟ (୧୯୭୦-୮୦) । ଅଷ୍ଟମ ଦଶକରେ ମୋର ନାଟ୍ୟକାର ଜୀବନର ତୃତୀୟ ପର୍ଯ୍ୟାୟରେ ମୁଁ ନାଟ୍ୟ ସାହିତ୍ୟର ପ୍ରାୟୋଗିକ ଦିଗଟି ପ୍ରତି ଅଧିକ ସଚେତନ ହୋଇଥିବାରୁ ମୁଁ ନିର୍ଦ୍ଦେଶକ ଭୂମିକାରେ ଅବତୀର୍ଣ୍ଣ ହୋଇଛି । ଏହା ମଧ୍ୟ ମୋର ଗବେଷଣା ଏବଂ ନାଟ୍ୟ ସମାଲୋଚନା ସହିତ ସଂପର୍କିତ ହେବାର ସମୟ ।

ନାଟ୍ୟ ସମାଲୋଚନା ସହିତ ସଂପର୍କ ସ୍ଥାପନ ଏବଂ ଗବେଷଣା ଏକା ସମୟରେ ଚାଲୁଥିବାରୁ ମୁଁ ଚିତ୍ରକଳା, ସ୍ଥାପତ୍ୟ, ସଙ୍ଗୀତ, ନୃତ୍ୟ ଏବଂ ଆଲୋକ ସମ୍ପାତ ପ୍ରଭୃତି ପୃଥିବୀର ସମସ୍ତ ବିବର୍ତ୍ତନ ସହିତ ସଂପୃକ୍ତ । ଅଷ୍ଟମ ଦଶକରୁ ଏ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ମୁଁ ଚଳଚ୍ଚିତ୍ର ଓ ଟେଲିଭିଜନ୍ ସହିତ ସଂପୃକ୍ତ ରହିବାରୁ ଦୃଶ୍ୟଭିତ୍ତିକ ପରିକଳ୍ପନା ମୋର ସୃଷ୍ଟିସମୂହର ମୁଖ୍ୟ ଆଧାର ହୋଇ ପଡ଼ିଛି । ବିଶ୍ୱର ଉଚ୍ଚର

ଆଧୁନିକ ନାଟ୍ୟ ଶୈଳୀଗୁଡ଼ିକ ଉପରେ ମୋର ଗବେଷଣା ନିବନ୍ଧ ଥିବାରୁ ଏବଂ ସେଗୁଡ଼ିକୁ ଯାତ୍ରା ମଞ୍ଚରେ ପ୍ରୟୋଗ କରିବାର ସୁଯୋଗ ଥିବାରୁ ଅନେକ ତାତ୍ତ୍ୱିକ ଏବଂ ଆଙ୍ଗିକ ପ୍ରୟୋଗ କରିବାର ସୁଯୋଗ ପାଇଛି । ଏହା ଭରତର ବହୁ ନାଟ୍ୟ-କାରଙ୍କର ଭାଗ୍ୟରେ ଜୁଟି ନାହିଁ । ମୋ' ନାଟ୍ୟ ସାହିତ୍ୟର ଗବେଷକମାନଙ୍କ ମତ ଯେ ଭାରତରେ ଗିରୀଶ କର୍ନାଡ଼ଙ୍କ ପୂର୍ବରୁ ମୁଁ ଲୋକନାଟକ ଶୈଳୀର ପ୍ରୟୋଗ କରିଛି । ଅର୍ଥାତ୍ ସମଗ୍ର ଦେଶରେ ଏହା 'ମହାନାଟକ' ସମୟରୁ ହିଁ ଆରମ୍ଭ । ବର୍ତ୍ତମାନ ସମଗ୍ର ଦେଶର ନାଟ୍ୟକାର ଓ ପ୍ରସିଦ୍ଧ ନିର୍ଦ୍ଦେଶକ ମାନଙ୍କ ସହ ବ୍ୟକ୍ତିଗତ ସଂପର୍କ ସ୍ଥାପିତ ହେଲା ପରେ ଜାଣି ପାରୁଛି ଯେ ଓଡ଼ିଆ ନାଟକର ଗୁଣାତ୍ମକ ଏବଂ ଆଙ୍ଗିକ ଉଦ୍‌ବର୍ତ୍ତନ କରୁ କରୁ ଏହା ସମଗ୍ର ଭାରତୀୟ ନାଟ୍ୟଧାରାର ଉଦ୍‌ବର୍ତ୍ତନ ସହ ସଂଯୁକ୍ତ ହୋଇ ଯାଇଛି । ଏହା ମୋର ଗର୍ବ । ମୋର ଭିତରେ ଏଇ ଯୋଉ ଗର୍ବ ଓ 'ଅହଂ" ଅଛି, ତାହା ମୋର ଏଇ ଆତ୍ମସଚେତନ ମୁଖବନ୍ଧ ଲେଖାରୁ ସ୍ପଷ୍ଟ ହୋଇ ପାରିବ ।

ଅତଏବ, ଯେଉଁମାନେ ମୋ' ଠାରୁ ବୟସରେ ବଡ଼ ଏବଂ ଓଡ଼ିଆ ସାହିତ୍ୟର "ମୁଣ୍ଡି" ଭାବରେ ବିଭିନ୍ନ ଜାତୀୟ ସ୍ତରର ସାହିତ୍ୟ ସହିତ ସଂପୃକ୍ତ ସେମାନେ ମୋର ପ୍ରଥମ ଶତ୍ରୁ, କିଛି କିଛି ସାହିତ୍ୟିକ ପୁରସ୍କାର ପାଇଥିବା ଏବଂ ଜାତୀୟ ସ୍ତରରେ ନିଜକୁ ପ୍ରତିଷ୍ଠା କରିଥିବା ସାହିତ୍ୟିକମାନେ ଏହି କାରଣରୁ ମୋର ସମଗ୍ର କୃତିକୁ "ଯାତ୍ରାବାଲା" କହି ଉଡ଼େଇ ଦେବାର ବ୍ୟର୍ଥ ପ୍ରୟାସ କରିଛନ୍ତି । ଏମାନଙ୍କୁ ପଚାରିଲେ କେହି ଜଣେ ହେଲେ ଯାତ୍ରାମଞ୍ଚ ସଂପର୍କରେ ପଦେ ହେଲେ ଠିକ୍ କଥା କହି ପାରିବେ ନାହିଁ । ସେମାନେ Peter Brook ଙ୍କର Empty space ଗ୍ରନ୍ଥଟି ପଢ଼ି ନାହାନ୍ତି । ପଢ଼ିଥିଲେ ଶୂନ୍ୟସ୍ଥାନରେ କିପରି ଦୃଶ୍ୟ ଭିତ୍ତିକ/ଚିତ୍ର ଭିତ୍ତିକ କାବ୍ୟ ଲେଖାଯାଇ ପାରୁଛି, ତା'ର ପରିଚୟ ମିଳି ପାରନ୍ତା । ବୌଦ୍ଧିକ ଶଠତାରୁ ଏଇ ଯେଉଁ ସମାଲୋଚନା ତିଆରି ହୁଏ, ତାହା ମୋ' ପାଇଁ କେବଳ ଶତ୍ରୁତା ନୁହେ—ସମଗ୍ର ଓଡ଼ିଆ ନାଟକକୁ ସାହିତ୍ୟିକ ମାନ୍ୟତା ନ ଦେବା ପାଇଁ ଏହା ଏକ ଚକ୍ରାନ୍ତ ।

'ହେ ପୃଥିବୀ ବିଦାୟ' ନାଟକର ପ୍ରକାଶନ କାଳରେ ଏହି ନାଟକର ମଞ୍ଚ କଳ୍ପନା, ଆଲୋକ ସଂପାତ ଏବଂ କାହାଣୀ ଚୟନ ଓ ଉପସ୍ଥାପନା ଶୈଳୀରେ ସଂଯୋଜନା ଅନ୍ତରାଳରେ ଥିବା ନାନ୍ଦନିକ ସଫଳତା/ବିଫଳତାକୁ ବୁଝିବା ସମ୍ଭବପର ହୋଇ ପାରିବ ନାହିଁ ବୋଲି ଏପରି ଏକ ଦୀର୍ଘ ମୁଖବନ୍ଧ ଲେଖିବା ଆବଶ୍ୟକ ମନେ ହେଉଛି ।

( ଖ )

'ହେ ପୃଥିବୀ ବିଦାୟ' ନାଟକ ପ୍ରଥମେ ମଞ୍ଚସ୍ଥ ହୋଇଥିଲା ୧୯୬୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ । ମୁଁ ସେତିକି ବେଳର ସ୍ନାତକୋତ୍ତର ଇଂରାଜୀ ବିଭାଗର

ପ୍ରତ । ବର୍ଷେ ଆଗରୁ ମୋର ପାଶ୍ କରିଯିବା ଉଚିତ ଥିଲା । ଆର୍ଥିକ ଅବସ୍ଥା ଠିକ୍ ନଥିବାରୁ ଏବଂ ସେହି ବର୍ଷ ମୋର ଆଖିରେ ଗୋଟିଏ ଅପରେଶନ୍ କରଯାଇଥିବା ଯୋଗୁଁ ପାଠ ପଢ଼ାରେ ବିଳମ୍ବ ହେଲା । ଏ ନାଟକ ପ୍ରକାଶିତ ହେବାକୁ ଯାଉଛି ୩୩ ବର୍ଷ ଅର୍ଥାତ୍ ତିନୋଟି ଦଶନ୍ଧି ପରେ । ଯାରି ଭିତରେ ଏଇ ନାଟକରେ ଅଭିନୟ କରିଥିବା କୁମାରୀ ରୁବି ଓ ସ୍ୱପ୍ନା ବର୍ତ୍ତମାନ ବହୁ ସନ୍ତାନର ଜନନୀ ଏବଂ ଏହି ନାଟକର ଲେଖକ ଅଧ୍ୟୟନ ଶେଷକରି ତିନି ଦଶାବ୍ଦୀରୁ ଅଧିକ ସମୟ ଅଧ୍ୟାପନା କରି ଏ ବର୍ଷ ଅବସର ଗ୍ରହଣ କରୁଛନ୍ତି ।

ଅଥଚ ଏ ନାଟକର ମୁଖ୍ୟ ସାମାଜିକ ଦ୍ୱନ୍ଦ୍ୱଟି ଗଢ଼ି ଉଠିଛି ଜଣେ ଅଧ୍ୟାପକ ଓ ଜଣେ ଆଇ. ଏ. ଏସ୍. ଅଫିସରଙ୍କୁ ନେଇ । ଏଇ ନାଟକର ମୁଖ୍ୟ ଚରିତ୍ରଟି ଜଣେ ଅଧ୍ୟାପକ ଏବଂ ସେଇ ଚରିତ୍ରଟି ପ୍ରତି ମୋର ଯଥେଷ୍ଟ ବ୍ୟକ୍ତିଗତ ଦୁର୍ବଳତା ଥିଲା ବୋଲି ଅବବୋଧ ହେଉଅଛି । କାରଣ ଅଧ୍ୟାପକଙ୍କ ମୂଲ୍ୟବୋଧ ଭିତ୍ତିକ ବ୍ୟର୍ଥ ଜୀବନର ଦାରିଦ୍ର୍ୟ ଶକ୍ତିସମ୍ପନ୍ନ ଜଣେ ଆଇ. ଏ. ଏସ୍. ଅଫିସରଙ୍କ ଅସ୍ମିତାର ଚକ୍ରତଳେ ପେଷିତ ହୋଇଅଛି । ଅଧ୍ୟାପକ ନିଶିକାନ୍ତ ସାରା ଜୀବନର ସଞ୍ଚିତ ମୂଲ୍ୟବୋଧ ଗୁଡ଼ିକର ଅବକ୍ଷୟ ଦେଖି ଯେତିକି ମର୍ମାହତ ହୋଇ ନାହାନ୍ତି; ତା' ଠାରୁ ଅଧିକ ମାନସିକ ଚାପର ଶିକାର ହୋଇଛନ୍ତି, ସେଇ ମୂଲ୍ୟବୋଧ ଗୁଡ଼ିକ ତାଙ୍କ ସମଗ୍ର ପରିବାରକୁ ଯେତିକି ବେଳେ ଧ୍ୱଂସ କରୁଛି । ସ୍ୱାଧୀନତା ଦିବସର ସକାଳେ ସେଇ ବୟସ୍କ ଲୋକଟା ନିଜ ମାନସିକ ଚାପ ଦ୍ୱାରା ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିଛି । ୧୯୬୭ ମସିହା ଅଗଷ୍ଟ ପନ୍ଦର ସନ୍ଧ୍ୟାରେ ଏଇ ନାଟକ ମଞ୍ଚସ୍ଥ ହେଲା ବେଳେ ଦର୍ଶକମାନେ ଆଦର୍ଶର ଏ ମୃତ୍ୟୁକୁ ପ୍ରଶଂସା କରିଥିଲେ । ବର୍ତ୍ତମାନ ହୁଏତ ଆଦର୍ଶର ମୃତ୍ୟୁକୁ ଏକ ଦୁଃଖଦ ଘଟଣା ବୋଲି କେହି ଗ୍ରହଣ କରିବେ ନାହିଁ । ଏହାକୁ ଏକ ବିୟୋଗାନ୍ତକ ନାଟକର ଆଖ୍ୟା ଦେଲେ ମଧ୍ୟ କେହି ସମ୍ବେଗାତ୍ମକ ଅନୁଭବ ପାଇବେ ନାହିଁ ।

କାରଣ ଏଇ ୩୩ ବର୍ଷ ଭିତରେ ମୁଁ ମଧ୍ୟ ଅଧ୍ୟାପକ ହୋଇଛି ଏବଂ ସାହିତ୍ୟର 'ଟ୍ରାଜେଡ଼ି' ପଢ଼ାଉ ପଢ଼ାଉ ବୁଝି ପାରିଛି ଯେ ଗଣତନ୍ତ୍ରର ସାମାଜିକ ବ୍ୟବସ୍ଥା ଭିତରେ 'ଟ୍ରାଜେଡ଼ି' ବା ବିୟୋଗାନ୍ତକ ଅନୁଭୂତିର ତୀବ୍ରତା ଭୁଷୁଡ଼ି ପଡ଼ିଛି । ଭୁଷୁଡ଼ି ପଡ଼ିଛି ଏଥିପାଇଁ ଯେ ବିୟୋଗାନ୍ତକ ନାଟକର ନାୟକ ବର୍ତ୍ତମାନ ଅଦୃଶ୍ୟ, ଯେଉଁ ମୂଲ୍ୟବୋଧ ପାଇଁ ଓ ଆଦର୍ଶ ପାଇଁ ବିୟୋଗାନ୍ତକ ନାଟକର ନାୟକଟି ମୃତ୍ୟୁକୁ ଆଲିଙ୍ଗନ କରିନିଏ, ତାହା ଏକ ମହନୀୟ କାର୍ଯ୍ୟ କିମ୍ବା ଗଣତାନ୍ତ୍ରିକ ପୃଥିବୀ ପାଇଁ ଏକ ଉଦାହରଣ ନୁହେ ବୋଲି ଜଣାପଡ଼ିଯାଇଛି ।

ଏପରି ଏକ ନାୟକ ସଙ୍କଟର ଅବସ୍ଥାରେ ଜଣେ ଅଧ୍ୟାପକଙ୍କୁ ନାୟକ ଓ ଜଣେ ଆଇ. ଏ. ଏସ୍. ଅଫିସରଙ୍କୁ ଖଳନାୟକ କରି ବାଛିବା କଳ୍ପନାଟି ୩୩ ବର୍ଷ ତଳର ରମେଶ ପାଣିଗ୍ରାହୀଙ୍କ ମନକୁ କିପରି ଛୁଟିଲା, ତାହା ବର୍ତ୍ତମାନ ମନେ ପଡ଼ୁନାହିଁ । ସେତେବେଳକୁ ରମେଶ ପାଣିଗ୍ରାହୀ ଜଣେ ଅଧ୍ୟାପକ ହୋଇନାହାନ୍ତି । କିନ୍ତୁ ପରବର୍ତ୍ତୀ ସମୟରେ ଆଇ. ଏ. ଏସ୍ ବା ଆଇ. ପି. ଏସ୍. ଇତ୍ୟାଦି ହେବାକୁ ଯୋଜନା କରୁଥିବା କିଛି ସମବୟସ୍କ କିମ୍ବା ସମସାମୟିକମାନଙ୍କୁ ଦେଖୁଛନ୍ତି । ବୋଧହୁଏ ୨୩ ବର୍ଷ ବୟସ୍କ ରମେଶ ପାଣିଗ୍ରାହୀଙ୍କ ପାଇଁ ଏହା ଥିଲା ତତ୍‌କାଳୀନ ସାଂପ୍ରତିକ ପରିସ୍ଥିତି । ଷଷ୍ଠ ଦଶକର ଦ୍ୱିତୀୟାର୍ଦ୍ଧର ସାଂସ୍କୃତିକ ମୂଲ୍ୟବୋଧର ପୃଷ୍ଠଭୂମି ।

ଷଷ୍ଠ ଦଶକର ମଧ୍ୟଭାଗ ବେଳକୁ ସ୍କୁଲ ଜୀବନର ଅର୍ଥହୀନତା ଶୁଝିଯାଇଛି । ମୁଁ "ବୃନ୍ଦାବନ ବିଦ୍ୟାପୀଠ"ରେ ପାଠ ପଢ଼ୁଥିଲି, ତାହା ସେକାଳର ଦକ୍ଷିଣ ଓଡ଼ିଶାର କଂଗ୍ରେସ ମନ୍ତ୍ରୀ ଶ୍ରୀ ବୃନ୍ଦାବନ ନାୟକଙ୍କ ନାମରେ ନାମିତ । ତାଙ୍କ ମୃତ୍ୟୁପରେ ତାଙ୍କ ତ୍ୟାଗ ଓ ଆଦର୍ଶର ଉତ୍ତରାଧିକାରୀ ଦକ୍ଷିଣ ଓଡ଼ିଶାରେ ଏ ଯାବତ୍ ଜନ୍ମ ହୋଇନାହାନ୍ତି । ଏଣୁ 'ବୃନ୍ଦାବନ ବିଦ୍ୟାପୀଠ'ରେ ଭାରତର ୧୭ଟି "ବିଜ୍ଞାନ ମନ୍ଦିର" ମଧ୍ୟରୁ ଗୋଟିଏ ଥିଲା ଆମ ସ୍କୁଲରେ । ଗୋବରରୁ କିପରି ଗ୍ୟାସ୍ ବାହାରିବ ଏବଂ ତା'ଦ୍ୱାରା କେମିତି ସମଗ୍ର ସ୍କୁଲଟି ବିଦ୍ୟୁତ୍ ଆଲୋକରେ ଉଦ୍‌ଭାସିତ ହେବ ଆମେ ଦେଖୁଥିଲୁ ପଞ୍ଚମ ଦଶକରେ । ପ୍ରକାଶ ଥାଉ କି ପଞ୍ଚମ ଦଶକର କୌଣସି ଗ୍ରାମାଞ୍ଚଳରେ ବିଦ୍ୟୁତ୍ ଆଲୋକର ସମ୍ଭାବନା ନଥିଲା । ପୁନଶ୍ଚ ସେତିକିବେଳେ ଆମ ବିଦ୍ୟାଳୟରେ "କୃଷି" ଏକ 'ଅପ୍‌ସନାଲ୍' ଥିଲା ଏବଂ ଭୁବନେଶ୍ୱରର କୃଷି ମହାବିଦ୍ୟାଳୟରୁ ଅଧ୍ୟାପକ ଯାଇ ସ୍କୁଲରେ ପାଠ ପଢ଼ାଉଥିଲେ । ବିଜ୍ଞାନ ଶିକ୍ଷା ପାଇଁ ଆମ ସ୍କୁଲରେ 16 M.M. ଫିଲ୍ମ ଦେଖାଇ ଦିଆଯାଉଥିଲା ।

ଏ ସବୁ ଆତ୍ମଜୀବନୀ ମୂଳକ ଘଟଣାର ସ୍ମୃତିଚାରଣ ସହିତ ଏ ନାଟକର ସମ୍ପର୍କ କ'ଣ ବୋଲି ପାଠକେ ଭାବୁଥିବେ । ମୁଁ ଏସବୁ ଲେଖୁବାର ଅର୍ଥ ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ଦଶବର୍ଷ ବା ଦୁଇଟି ପଞ୍ଚବାର୍ଷିକ ଯୋଜନା ଶୁଝିଥିବାବେଳେ କିଶୋର ବୟସର ରମେଶ ପାଣିଗ୍ରାହୀ କେବଳ ଓଡ଼ିଆ ସାହିତ୍ୟର ଗ୍ରନ୍ଥାବଳୀ ଓ ଉପନ୍ୟାସ ପଢ଼ୁଥିଲେ । ବିଜ୍ଞାନ ଯେଉଁ ସତ୍ୟକୁ ପ୍ରତିଷ୍ଠା କରେ, ସେଇ ସତ୍ୟରେ ମୋର ଆଦୌ ବିଶ୍ୱାସ ନଥିଲା । ବିଜ୍ଞାନ ସହିତ ଯେଉଁ ଅର୍ଥନୀତିକ ଏବଂ ସାମାଜିକ ପ୍ରଗତିର ସ୍ୱପ୍ନ ଦେଖାଯାଉଥିଲା ଓ ଆମକୁ ସେଇ ସ୍ୱପ୍ନଗୁଡ଼ିକୁ ବିକ୍ରୀ କରଯାଉଥିଲା ସେଗୁଡ଼ିକ ଶୁଣି ମୁଁ ମନେ ମନେ ହସୁଥିଲି । ତେଣୁ ଭଗବାନ ପଣ୍ଡା ଘରେ ବସି ଅମୀନ୍ ସାୟାନୀଙ୍କ କଣ୍ଠରେ ଉପସ୍ଥାପିତ ରେଡ଼ିଓ ସିଲୋନ୍‌ର 'ବିନାକା ଗୀତ୍ ମାଲା' ଶୁଣିବାରେ ମୋର ବେଶୀ ଆଗ୍ରହ ଥିଲା । ଆଗ୍ରହ ଥିଲା ଗୋପୀନାଥ, କାହ୍ନୁଚରଣ,

ବିଭୂତି ପଟ୍ଟନାୟକ ଏବଂ କଣ୍ଢୁଗି ଚରଣ ପ୍ରଭୃତିଙ୍କ ଉପନ୍ୟାସ ପଢ଼ିବା । ରାମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, କମଳଲୋଚନ କିମ୍ବା ଭଞ୍ଜକିଶୋର ପ୍ରଭୃତିଙ୍କ ନାଟକ ପଢ଼ିବାରେ, ସଚ୍ଚି ରାଉତରାୟ ଓ କୁଞ୍ଜବିହାରୀ ଦାଶଙ୍କୁ ପଢ଼ିବାରେ, । 'ନିଆଁଖୁଣ୍ଟା'ର ସମ୍ପାଦକ ଗୋଦାବରୀଶ ମହାପାତ୍ରଙ୍କ ଝିଅ ଆମ ଗାଁରେ ବାହା ହୋଇଥିବାରୁ ସେ ଆମ ଗାଁକୁ ଆସୁଥିଲେ ଓ ତାଙ୍କର ଅନେକ ଗଳ୍ପର ଘଟଣା ଆମ ଅଞ୍ଚଳର । ଏହି ଦୃଷ୍ଟିରୁ ରାମପ୍ରସାଦ ସିଂହ, ଅନନ୍ତ ପ୍ରସାଦ ପଣ୍ଡା ଏବଂ ବ୍ରହ୍ମାନନ୍ଦ ପଣ୍ଡାମାନଙ୍କୁ ଆମେ ପଢ଼ୁଥିଲୁ । ରାଜକିଶୋର ରାୟ, କାଳିନ୍ଦୀ ଚରଣ, ଫକୀର ମୋହନ, ମାୟାଧର ମାନସିଂ ଏବଂ ଗୋଦାବରୀଶ ଆମ ପାଠ୍ୟକ୍ରମରେ ଥିଲେ ।

ସମାଜରେ ବ୍ରାହ୍ମଣମାନଙ୍କ ପ୍ରତିପତ୍ତି ଯଥେଷ୍ଟ ଥିଲା ଏବଂ ଗାନ୍ଧୀଙ୍କ ଦୟାରୁ ଏବଂ ସମାଜବାଦୀ ଗଣତନ୍ତ୍ର ବ୍ୟବସ୍ଥା ଦ୍ୱାରା କ୍ରମଶଃ ଷଷ୍ଠଦଶକ ଆରମ୍ଭ ବେଳକୁ କରଣ, ଖଣ୍ଡାୟତ ଓ ଅନ୍ୟାନ୍ୟ ଶୂଦ୍ର ଓ ବୈଶ୍ୟମାନେ ଜାତିଭେଦ ବିରୁଦ୍ଧରେ (ଅର୍ଥାତ୍ ବ୍ରାହ୍ମଣମାନଙ୍କ ବିରୁଦ୍ଧରେ) ପ୍ରବନ୍ଧ ପାଟିତୁଣ୍ଡ କରୁଥିଲେ । ନାଟକମାନଙ୍କରେ ଚୁଟି ରଖିଥିବା ଭିକମଗା ବ୍ରାହ୍ମଣମାନଙ୍କୁ "କମେଡ଼ି ଚରିତ୍ର" ବୋଲି ଚିତ୍ରଣ କରାଗଲା ଏବଂ ସେମାନଙ୍କୁ କ୍ରମେ କ୍ରମେ ସାମାଜିକ ସ୍ତରରେ ଆକ୍ରମଣ କରିବା କାର୍ଯ୍ୟଟିକୁ ଆଧୁନିକତା ବା ସ୍ୱାଧୀନୋତ୍ତର ମୁକ୍ତିବୋଧର ଆଖ୍ୟା ଦିଆଗଲା । ପୁନଶ୍ଚ ଶାସନ କ୍ଷେତ୍ରରେ ଯେତେ ଶକ୍ତିଶାଳୀ ଓ ଅର୍ଥପ୍ରଦାୟକ ବ୍ୟବସ୍ଥା ଅଛି ସେଗୁଡ଼ିକରେ ସେମାନେ ଅଂଶଗ୍ରହଣ କରି ନିଜ ଆର୍ଥିକ କ୍ଷମତାକୁ ବଢ଼େଇବାରେ ଲାଗିଲେ ।

ଏହା ସାଙ୍ଗକୁ ଚାଲିଲା ଧର୍ମାନ୍ତରୀକରଣ ପ୍ରକ୍ରିୟା ଓ ଇଂରାଜୀ ଶିକ୍ଷା । ଇଂରେଜୀ ଢାଞ୍ଚାରେ ଆମ ଓଡ଼ିଆ ସମାଜକୁ କେତେ ପରିମାଣରେ ଆଧୁନିକତା ଆସିଥିଲା ଆମେ କଲେଜ ଛାତ୍ର ହିସାବରେ ବିଶେଷ ଜାଣିପାରୁନଥିଲୁ । ହଠାତ୍ ଦିନେ ବ୍ରହ୍ମପୁର ସହରରେ ସବୁଗୁଡ଼ିକ ଚର୍ଚ୍ଚରେ ନିଆଁ ଲାଗିଗଲା । ରାସ୍ତାରେ ହଜାର ସଂଖ୍ୟକ ପୋଲିସ୍ ବାୟୋନେଟ ଧରି ଚାଲିଲେ । ତା'ପରେ ଭିଏଟ୍‌ନାମ୍ ପାଇଁ ଯୁଦ୍ଧ ଲାଗିଲା ଛାତ୍ର ସମାଜରେ । ଯୁଦ୍ଧ ଲାଗିଲା ପଇସାବାଲା ଓ ପଇସା ନଥିଲା ବାଲାଙ୍କ ଭିତରେ । ତା'ପରେ ଦେଖିଲୁ ଗୋପାଳପୁର ପାଖ ଗୋଲା ଗାଁ ମାନଙ୍କରେ ଗାଈ, ଛେଳି, କୁକୁଡ଼ା ଦେଲେ ଧର୍ମ ପରିବର୍ତ୍ତନ ହୋଇଯାଉଛି । ଦିନେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସାମ୍ନାରେ ଥିବା ଚା' ଦୋକାନରେ ଖାଉବେଳେ ଜଣେ ଧର୍ମପ୍ରଚାରକ ପାଦ୍ରୀଙ୍କ ସହ ଦେଖାହେଲା । ମୁଁ ପଚାରିଲି "କେମିତି କାମ ଚାଲିଛି"—ସିଏ କହିଲେ, "ଗାଈ ଆଉ ଛେଳି ଦେଲେ ସେମାନେ ଧର୍ମ ପରିବର୍ତ୍ତନ କରୁଛନ୍ତି ?" ମୁଁ ପଚାରିଲି, "ତମେ ଯାହା କରୁଚ, ସେଗୁଡ଼ା ପ୍ରବଳ exploitation" ! କଥାଟାକୁ ଏଡ଼େଇଦେଇ ସିଏ କହିଲେ ଇଂରେଜୀରେ, "Jesus is a part of history".

କୋଉ ଧର୍ମରେ କିଏ ବିଶ୍ୱାସ କରିବ ସେଇଟା ଲୋକର ବ୍ୟକ୍ତିଗତ ବ୍ୟାପାର, ଏ ନାଟକ ସହିତ ତାହାର କୌଣସି ସମ୍ପର୍କ ନାହିଁ । କିନ୍ତୁ ସମ୍ପର୍କ ନିଶ୍ଚୟ ଅଛି ମୂଲ୍ୟବୋଧ ଏବଂ ଶିକ୍ଷାର ଆୟତନରେ ଆସିଥିବା ଅଧଃ ପତନର ଇତିହାସ ସହିତ । ଏଇ ନାଟକର ନାୟକ ଅଧ୍ୟାପକ ନିଶିକାନ୍ତଙ୍କ ଜୀବନରେ ଗୋଟିଏ ଆଇ. ଏ. ଏସ୍. ଅଫିସର ଯେଉଁ କ୍ଷତି ଘଟେଇଲା, ତା'ର ପୂର୍ବାପର ସଙ୍ଗତି ମଧ୍ୟ ଜଣେଇଦବା ଆବଶ୍ୟକ । ପୂର୍ବାପର ସଙ୍ଗତି ହେଲା ୧୯୬୭ ମସିହାରେ ଏଇ ଯୋଉ ଘଟଣାଟି ଘଟିଲା ସେଥିରେ ସାମାଜିକ ଓ ମନସ୍ତାତ୍ତ୍ୱିକ ବାତାବରଣର ପ୍ରଭାବ କେତେ ଓ କାହାଣୀ ତିଆରି କରିଥିବା ନାଟ୍ୟକାରର କଳ୍ପନା କେତେ ! ଏଥିରେ ନିଶିକାନ୍ତ ନାମକ ମୃତ୍ୟୁବରଣ କରିଥିବା ଅଧ୍ୟାପକଟିର ମୂଲ୍ୟବୋଧ ପାଇଁ ଲଢ଼େଇ କରିବାର କ୍ଷମତା କେତେ ଓ ଅନ୍ୟପକ୍ଷରେ I.A.S ପରିବାରଟିର କ୍ଷମତା ଓ ଆର୍ଥିକ ଶକ୍ତିକୁ ଅପବ୍ୟବହାର କରିବା କ୍ଷମତା କେତେ, ତା'ରି ପରୀକ୍ଷା କରାଯାଇଛି ନାଟକଟିରେ । ଆର୍ଥିକ ଅବସ୍ଥା ଦ୍ୱାରା ସେଇଠି ମାପିବାକୁ ଚେଷ୍ଟା କରାଯାଇଛି, କିଏ କେତେ ଆଧୁନିକ ।

ବର୍ତ୍ତମାନ ୩୩ ବର୍ଷ ପରେ ମଧ୍ୟ ଯାହା ପାଖରେ ପଇସା ଅଛି ସିଏ ଅଧିକ ଆଧୁନିକ ବୋଲି ଜଣାପଡୁଚି । ୧୯୬୭ ମସିହାରେ ଆଧୁନିକ ହେବାକୁ ହେଲେ ଇଂରେଜୀରେ କଥାବାର୍ତ୍ତା ହେବାକୁ ପଡୁଥିଲା । ସ୍କୁଟର ଚଢ଼ିବାକୁ ପଡୁଥିଲା । ସାର୍ତ୍ରେ, କ୍ୟାମ୍ୟୁ, ମାର୍କସ୍, ଲେନିନ୍, ସାଇଗନ୍ ବିଭୁଆ, କାଫ୍‌କା ଏମାନଙ୍କୁ ପଢ଼ିବାକୁ ପଡୁଥିଲା, କିଛି ନ ହେଲେ ଇଲିଅଟ୍ ପଢ଼ିଲେ ମଧ୍ୟ ଚଳୁଥିଲା, ଭଲ ଭାଷଣ ଦେଲେ ଓ ଭଲ "ଷ୍ଟାଇଲ୍" ପୋଷାକ ପିନ୍ଧି ଇଂରେଜୀ କହିଲେ ଆଧୁନିକ । "ଆଇ. ଏ. ଏସ୍ ଦଉଡ଼ି" ବୋଲି କହିଲେ ମଧ୍ୟ ଆଧୁନିକ । Rau's Study Circleରୁ ମିଳୁଥିବା ନୋଟ୍‌ସ୍‌ରୁ ଘୋଷି ଇଂରେଜୀ କହିଲେ ଆଧୁନିକ । "ଇଙ୍ଗ୍‌ଲିସ୍ ପେପର୍" ପଢ଼ିଲେ ଆଧୁନିକ । ଏମିତି କେତେ କ'ଣ ! ମୁଁ ଯାହା ଦେଖୁଥିଲି ସେତିକି ବେଳେ କଣ୍ଟା ଚାମୁଚ ଧରି ଖାଇବା ଜାଣି ନଥିଲେ ଅଧିକାଂଶ ପିଲା । ଅର୍ଥାତ୍ ଆଧୁନିକତା କହିଲେ ବିଜ୍ଞାନ ଭିତ୍ତିକ ପଇସା ଦ୍ୱାରା ଗୁଡ଼ିଏ ଷ୍ଟାଇଲ ମାରି, ଇଂରେଜୀ କହି ଗାଁ ପିଲମାନଙ୍କୁ ଭୁଲେଇବାର ଅନ୍ୟନାମ ଥିଲା ଆଧୁନିକତା । ଡହରାମୀର ଅନ୍ୟନାମ ଥିଲା ଆଧୁନିକତା । ବର୍ତ୍ତମାନ ମଧ୍ୟ ଆଧୁନିକତାର "୧୯୬୭-ମସିହା-ମାର୍କା ଡେଫିନିସନ୍" ରେ ବିଶେଷ କିଛି ପରିବର୍ତ୍ତନ ଆସିନାହିଁ ।

ବର୍ତ୍ତମାନ ମଧ୍ୟ UGC ଦରମା ଅଧ୍ୟାପକମାନଙ୍କୁ ନ ମିଳୁ ବୋଲି ଆଇ. ଏ. ଏସ୍ ମାନେ ଚକ୍ରାନ୍ତ କରୁଛନ୍ତି । ମୋଟା ମୋଟି କହିବାକୁ ଗଲେ ଓଡ଼ିଶାରେ ଶିକ୍ଷାର ଅବକ୍ଷୟ ପାଇଁ ଆମର ପ୍ରଶାସନିକ "ଆଧୁନିକ"ମାନେ ଯାହା କରିଛନ୍ତି ତାହାର ପଟାନ୍ତର ନାହିଁ । ୧୯୫୦ ଠାରୁ ୧୯୬୦ ଭିତରେ ଆମେ ଦେଖିଛୁ

ମାଟ୍ରିକ୍ ପାଶ୍ କରିପାରୁନଥିବା ଲୋକେ ମଧ୍ୟ ନିମ୍ନମାଧ୍ୟମିକ ସ୍ତରରେ ଶିକ୍ଷକତା କରିବା ପାଇଁ କୋରାପୁଟ୍ ଯାଉଥିଲେ । ତାପରେ ଦେଖିଲୁ ସେମାନଙ୍କୁ ରାଜନୀତି ସହିତ ସଂପୃକ୍ତ କରିଦିଆଗଲା । ଦରମାରେ କୌଣସି ବିଶେଷ ପରିବର୍ତ୍ତନ କରାଗଲା ନାହିଁ । ଏଣୁ ଆମ ପ୍ରଶାସନିକ ଓ ନେତାମାନେ ପ୍ରଥମେ ଆମ ଓଡ଼ିଆ ସମାଜର ଶିକ୍ଷା-ଚେରଟିକୁ କାଟିଦେଲେ ।

ଏପରି କରୁ କରୁ ହଠାତ୍ ପ୍ରଶାସନିକ ଓ ନେତାମାନଙ୍କର ଆଖି ପଡ଼ିଲା ହାଇସ୍କୁଲ ଉପରେ । ହାଇସ୍କୁଲରେ ଯେଉଁ ଶିକ୍ଷକମାନେ ନିଯୁକ୍ତି ପାଇଲେ ସେମାନଙ୍କୁ ମଧ୍ୟ ନଷ୍ଟ କରିଦିଆଗଲା । ଶିକ୍ଷାର ଏଇ ଅଧଃପତନ ଆରମ୍ଭ ହେଲାପରେ ଆରମ୍ଭ ହେଲା ତିନୋଟି ବିଶ୍ୱବିଦ୍ୟାଳୟ ତିଆରି ହେବା ପ୍ରଗତି । ଏହି ପ୍ରଗତିର ପ୍ରସ୍ତରଣ ଭୂମି ରୂପେ ପ୍ରତିଷ୍ଠିତ ହେଲା ଅଗଣିତ କଲେଜ ଓ ତାହାର ଅଧ୍ୟାପକ ନିଯୁକ୍ତି ପାଇଲା ଏବଂ ଆରମ୍ଭ ହେଲା ଉଚ୍ଚଶିକ୍ଷାର ଧ୍ୱଂସ, ତଥାପି ନିଶିକାନ୍ତଙ୍କ ପରି ଅନେକ ମୂଲ୍ୟବୋଧ-ଭିତ୍ତିକ ଅଧ୍ୟାପକ ବଞ୍ଚିଥିଲେ ସେତିକି ବେଳକୁ ।

କିନ୍ତୁ ସେମାନେ ଏକ ପ୍ରଗତି ଆଡ଼କୁ ଆଗେଇ ଯାଉଥିବା ସମାଜର ନାୟକ ହେବା ସମ୍ଭବ ନଥିଲା । କାରଣ ଗଣତାନ୍ତ୍ରିକ ସମାଜବାଦରେ ସମସ୍ତେ ଆଧୁନିକ ନାୟକ । ସମସ୍ତଙ୍କର ସମାନ ଅଧିକାର । ବେଶୀ ଅଧିକାର ସେମାନଙ୍କର, ଯେଉଁ-ମାନଙ୍କର ଆର୍ଥିକ ଉନ୍ନତି ହେଉଥିଲା । ଏପରି ଆର୍ଥିକ ଉନ୍ନତି ପଛରେ ଶିକ୍ଷାଗତ ଯୋଗ୍ୟତା ଓ ନୈତିକତା ଅଗ୍ରାଧିକାର ପାଇବା ଉଦାହରଣ କ୍ରମଶଃ କମିଯାଉଥିଲା । ଏପରି ଏକ ଅଧଃପତନକୁ ପ୍ରୋତ୍ସାହନ ଦେଉଥିଲେ ନେତାମାନେ ଏବଂ ପ୍ରଶାସନିକ-ମାନେ ।

ଷଷ୍ଠ ଦଶକର ସାମାଜିକ ବ୍ୟବସ୍ଥାରେ ଜମିଦାରମାନଙ୍କର ପ୍ରତିପତ୍ତି କମିବାକୁ ଲାଗିଲା । କାରଣ ସମାଜବାଦୀ ରାଜନୀତିରେ ସେତିକିବେଳକୁ କିଛି କିଛି ଶିଳ୍ପପତି ଆଧିପତ୍ୟ ବିସ୍ତାର କରିବାକୁ ଆରମ୍ଭ କଲେ । ତା'ପରେ ଡାକ୍ତର, ଇଂଜିନିଅର୍ ଓ ଓଭରସିଅର୍‌ମାନଙ୍କର ଦକ୍ଷତା ଉପରେ ସାଧାରଣ ଲୋକମାନଙ୍କର ଯଥେଷ୍ଟ ଆସ୍ଥା ଥିଲା । ବାହାଘର ପାଇଁ ବରପାତ୍ର ଖୋଜାହେଲା ବେଳେ ଏମାନଙ୍କୁ ବେଶୀ ଯୌତୁକ ମିଳୁଥିଲା ।

କିନ୍ତୁ ଷଷ୍ଠ ଦଶକର ମଧ୍ୟଭାଗ ବେଳକୁ ବିଜ୍ଞାନ ଶିକ୍ଷାର ଆଉ ଏକ ପ୍ରତିଯୋଗୀ ଶିକ୍ଷା ଆବିର୍ଭୂତ ହେଲା । ତାହା କଳାସ୍ରୋତର ଶିକ୍ଷା, କାରଣ କଳାସ୍ରୋତର ଗ୍ରାଜୁଏଟ୍‌ମାନେ କ୍ରମଶଃ ପ୍ରଶାସନିକ ସେବା ସଂସ୍ଥାରେ ଯୋଗଦେଇ ତହସିଲଦାର୍ ଇତ୍ୟାଦି ହୋଇପାରିଲେ । ଏମାନେ ମଧ୍ୟ ଡାକ୍ତର, ଇଞ୍ଜିନିଅର୍ ଓ ଶିଳ୍ପପତି ତଥା

ଜମିଦାରମାନଙ୍କୁ ନିଜର "ମଡ଼େଲ୍" ମନେକରି ଅସଦ୍ ଉପାୟରେ ଅର୍ଥ ଉପାର୍ଜନ କରିବାକୁ ଲାଗିଲେ । ଏମାନେ ସବୁ ବହି ଘୋଷିବା ବିଦ୍ୟାରେ ପାରଙ୍ଗମ ଥିଲେ । ପଞ୍ଚମ ଦଶକରେ ଆମେ ସ୍କୁଲରେ ପଢ଼ିଲାବେଳେ ମଧ୍ୟ ଦେଖିଛୁ ବିଜ୍ଞାନ ଓ ଅଙ୍କ ମଧ୍ୟ ଘୋଷି ପାରୁଥିଲେ ଛାତ୍ରମାନେ । ସେମାନେ କ୍ରମଶଃ ଷଷ୍ଠଦଶକ ବେଳକୁ 'ଟେଟିଲିନ୍' ଏବଂ 'ସାସ୍‌କିନ୍' ସାର୍ଟ ପିନ୍ଧି ଆଧୁନିକ ଡାକ୍ତର ଓ ଇଂଜିନିଅର୍ ହୋଇଯିବାରୁ ଆର୍ଟସ୍ ଗ୍ରାଜୁଏଟ୍‌ମାନେ ବିଡ଼ିଓ ଏବଂ ତହସିଲ୍‌ଦାର୍ ହେଲାପରେ ଠିକ୍ ସେମିତି ଆଧୁନିକ ହେଲେ । ଖାଲି ରହିଗଲେ ଗୁଣ୍ଡାଗର୍ଦ୍ଦି କରି ଫେଲ୍ ହେବା ଅଯୋଗ୍ୟମାନେ । ଷଷ୍ଠ ଦଶକ ବେଳକୁ ସେମାନଙ୍କ ମଧ୍ୟରୁ ଅଳ୍ପ କିଛି ରାଜନୀତିରେ ପ୍ରବେଶ କରି ନିଜର ଆର୍ଥିକ ସ୍ୱଚ୍ଛଳତା ବଢ଼ାଇ ପାରିଲେ । ଏଇଠୁ ଆରମ୍ଭ ହେଲା ଶିକ୍ଷା ଓ ମୂଲ୍ୟବୋଧ ପ୍ରତି ଚରମ ଅବହେଳା ଓ ଅବକ୍ଷୟର ସମୟ । ୧୯୬୭ ମସିହାରେ ବୋଧହୁଏ ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ 'ହେ ପୃଥିବୀ ବିଦାୟ' ନାଟକ ଲେଖା ହୋଇଥିଲା । ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ହୋଇଥିଲେ ସୁଦ୍ଧା ମୁଁ ସେତିକିବେଳକୁ ୫ଟି ନାଟକ ଲେଖି ସାରିଥିଲି ଏବଂ ଏହା ମୋର ଷଷ୍ଠ ନାଟକ । ଏଣୁ ମୁଁ ଉପରୋକ୍ତ ଅବକ୍ଷୟ ପ୍ରତି ସଚେତନ ଥିବାର ସମ୍ଭାବନା କମ୍ ନୁହେ ।

ଶିକ୍ଷା ଏବଂ ମୂଲ୍ୟବୋଧର ଅବନତି ସହିତ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ଦୁଇଟି ଦଶକ ଏବଂ ମାତ୍ର ଗୁଟେଟି ନିର୍ବାଚନ ସଂପୃକ୍ତ । ସେତିକିବେଳକୁ ଜଣା ପଡ଼ିଗଲାଣି ଯେ କିଛି ପାଠ ନପଢ଼ି, କେବଳ ଟାଉଟରୀ କରି, କେବଳ ମିଛ କହି ଲୋକଙ୍କୁ ଠକି ପଇସା ରୋଜଗାର କରିବାର ବାଟ ହେଉଛି ରାଜନୀତି । ରାଜନୀତି କଲେ ପ୍ରଥମ କାର୍ଯ୍ୟଟି କରିବାକୁ ହବ—ଶିକ୍ଷା ଓ ଶିକ୍ଷକମାନଙ୍କର ସମ୍ମାନ ନଷ୍ଟ କରିବା ।

ଶିକ୍ଷା ଓ ଶିକ୍ଷକମାନଙ୍କର ସମ୍ମାନ ନଷ୍ଟ କରିବା କାର୍ଯ୍ୟଟି ଭାରତବର୍ଷରେ ପ୍ରଥମେ ଆରମ୍ଭ ହୋଇଥିଲା ମହାରାଷ୍ଟ୍ରର ପୁଞ୍ଜିପତିମାନଙ୍କ ଦ୍ୱାରା । ସେମାନେ ଷଷ୍ଠ ଦଶକରେ ହିନ୍ଦୀ ଚଳଚ୍ଚିତ୍ର ମାଧ୍ୟମରେ "ସାର୍" ମାନେ ଗୋଟିଏ ପ୍ରକାର "କମିକ୍" ଚରିତ୍ର ବୋଲି ଉପସ୍ଥାପନା କଲେ ଏବଂ ଉପସ୍ଥାପନା କଲେ ଯେ ସୁନ୍ଦର ଚେହେରା ଥିବା, ପଇସାବାଲା ବାପାଙ୍କ ପୁଅମାନେ "ନାୟକ" ହେଲେ ସେମାନେ "ସାର୍" ମାନଙ୍କୁ ଅପମାନ ଦେଇପାରିବେ । ଏଣୁ 'ନାୟକ' ଶବ୍ଦର ଏକ ନୂଆ ସଂଜ୍ଞା ତିଆରି ହେଲା । ସେହିପରି ଖଳନାୟକ ମଧ୍ୟ ନୂଆ ଷ୍ଟାଇଲ୍‌ରେ ତିଆରି ହେଲେ ଗଣତାନ୍ତ୍ରିକ ରାଜନୀତିର କ୍ରମ ବିବର୍ତ୍ତନ ମଧ୍ୟରେ । ସ୍ୱାଧୀନତା ପୂର୍ବରୁ "ଇଂଲିଶ୍" ଲୋକେ ଭିଲେନ୍ ଥିଲେ । ସମାଜବାଦୀ ରାଜନୀତି ବେଳକୁ "ଜମିଦାର"ମାନେ ହେଲେ ଖଳନାୟକ । ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ପଞ୍ଚବାର୍ଷିକ ଯୋଜନା ପରେ ବିଜ୍ଞାନଭିତ୍ତିକ ଅର୍ଥନୀତି ଦ୍ୱାରା ଯେଉଁ ଖଳନାୟକ ତିଆରି ହେଲେ ସେମାନଙ୍କୁ ପୁଞ୍ଜିପତି କୁହାଗଲା । ଏମାନେ ଶିଳ୍ପପତି

"ମାଣିକ ଯୋଡ଼ି" ନାଟକଟିକୁ ମୁଁ ଦେଖି ପ୍ରଭାବିତ ହେଲା ବେଳକୁ ପ୍ରାୟ ୧୯୫୫ ମସିହା । ସେ ବର୍ଷ ମୋର ସପ୍ତମ ଶ୍ରେଣୀ । ସେ ବର୍ଷ କଟକ ଜିଲ୍ଲାରେ ବନ୍ୟା ହୋଇ ଦଳେଇଘାଇ ଭାଙ୍ଗି ଯିବାରୁ ଆମେ ଚାନ୍ଦା ଦେଇ କଟକବାସୀଙ୍କୁ ବଞ୍ଚେଇଥିଲୁ । ସେ ବର୍ଷ ଷଡ଼େଇକଳା ଖରସୁଆଁ ଚାଲିଗଲା ବୋଲି ଆମେ 'ରାସ୍ତା ରୋକୋ' କାର୍ଯ୍ୟକ୍ରମରେ ନୂଆକରି ଆରମ୍ଭ ହୋଇଥିବା ଓ. ଆର୍. ଟି. ଟ୍ରାନ୍ସପୋର୍ଟ କମ୍ପାନୀର ବସ୍‌ମାନଙ୍କୁ ଅଟକାଉ ଥିଲୁ ।

'ମାଣିକ ଯୋଡ଼ି' ନାଟକର ଭିଲେନ୍ ସୁଟ୍ ପିନ୍ଧିଥିଲେ ଏବଂ ମୋଟା ଚୁରୁଟ୍ ଟାଣୁଥିଲେ, ଖଣ୍ଡେ ବାଡ଼ି ଧରିଥିଲେ ଏବଂ ମଝିରେ ମଝିରେ ବନ୍ଧୁକ ଫୁଟାଉ ଥିଲେ । ଏହାର ଦୁଇବର୍ଷ ଆଗରୁ—ଅର୍ଥାତ୍ ୧୯୫୩ ମସିହାରେ ମୁଁ ଯେତେବେଳେ ପଞ୍ଚମ ଶ୍ରେଣୀର ଛାତ୍ର ଥିଲି—ଆମ ଗାଁ ଧରକୋଟ ହାଇସ୍କୁଲରେ—ସେତିକିବେଳେ ଆମେ ଗୋଟିଏ "ଶିଶୁ ନାଟ୍ୟ ସଂଘ" ଗଠନ କରି ଦୋଳପୂର୍ଣ୍ଣିମା ଦିନ 'କୃଷକ ଓ ମହାଜନ' ନାଟକ ମଞ୍ଚସ୍ଥ କରାଇଥିଲୁ ମୋର ଶିକ୍ଷକ ଓ ପଡ଼ୋଶୀ ସ୍ୱର୍ଗତ କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କର ଅଗଣାରେ । "କୃଷକ ଓ ମହାଜନ" ନାଟକରେ 'ମହାଜନ' ଜଣକ ଟଙ୍କାଧାର ଦେଇ ଜଣେ କୃଷକର ନିରକ୍ଷରତାର ସୁଯୋଗ ନେଇଥିଲେ । କାହାଣୀଟି ଶେକସ୍‌ପିଅର୍‌ଙ୍କ 'ମର୍ଚ୍ଚେଣ୍ଟ୍ ଅଫ୍ ଭେନିସ୍' ନାଟକର ଅବଲମ୍ବନରେ ଲେଖା ଯାଇଥିଲା ।

୧୯୫୩ ମସିହା—ଅର୍ଥାତ୍ ସ୍ୱାଧୀନତା ପ୍ରାପ୍ତିର ୭ ବର୍ଷ ପରେ, ଆମ ଓଡ଼ିଶାର ଗ୍ରାମାଞ୍ଚଳରେ ଖଳନାୟକ ଥିବା ଲୋକମାନେ ମୂର୍ଖ ଚଷାମାନଙ୍କୁ ଠକୁ-ଥିଲେ । ଠକି ହେଉଥିବା ନିରୀହ ଲୋକମାନଙ୍କୁ, ଅର୍ଥାତ୍ ଚାଷୀମାନଙ୍କୁ 'ନାୟକ' ଆଖ୍ୟା ଦିଆଗଲା ବେଳେ, ଠକୁଥିବା ମହାଜନଟି ନିଶ୍ଚୟ ପାଠ ପଢ଼ିଥିବାରୁ ଶୋଷକ/ପୁଞ୍ଜି-ପତି ତାଲିକାରେ ଥିଲା । ସେଇ ଚରିତ୍ରଟି ଖଳନାୟକ । 'ମୂର୍ଖ ଚଷା' ବୋଲି କହୁଥିବା ଲୋକଗୁଡ଼ିକ 'ବ୍ରାହ୍ମଣ' ଜାତିର । ତେଣୁ ସ୍ୱାଧୀନତା ପ୍ରାପ୍ତି ପରେ ପରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ହେବାରୁ ଆମେ ବୁଝିଲୁ—ସମାଜବାଦୀ ରାଜନୀତି କାଳରେ ଓଡ଼ିଶାରେ ଦୁଇ ପ୍ରକାର ଖଳନାୟକ ଥିଲେ : (୧) ଉଚ୍ଚ ବର୍ଣ୍ଣର ବ୍ରାହ୍ମଣମାନେ (୨) ପଇସା ଥିବା ଜମିଦାର କିମ୍ବା ଶିଳ୍ପପତିମାନେ । ବ୍ରାହ୍ମଣମାନେ ଶିକ୍ଷା ଓ ମୂଲ୍ୟବୋଧ ସହିତ ଜଡ଼ିତ ଥିବା କୁସଂସ୍କାରଗ୍ରସ୍ତ ପ୍ରାଚୀନ ପ୍ରାଣୀ । ତେଣୁ ଗାନ୍ଧୀବାଦୀ ସମାଜ ଓ ଆମ୍ବେଦକରଙ୍କର ଲିଖିତ ସମ୍ବିଧାନ ପ୍ରଚଳନରେ ସେମାନେ ଶୋଷକ ଏବଂ ସେମାନଙ୍କୁ ବିରୋଧ କରିବା ଥିଲା ପ୍ରଗତିର ଚିହ୍ନ । ଦ୍ୱିତୀୟ ତାଲିକାରେ ଥିବା ଖଳନାୟକମାନେ ପୁଞ୍ଜିପତି ଓ ଶିଳ୍ପପତି ହୋଇଥିବାରୁ କୃଷକ ଓ ଶ୍ରମିକମାନେ ତାଙ୍କ ବିରୁଦ୍ଧରେ ଆନ୍ଦୋ-ଳନ କରିବେ । ଆନ୍ଦୋଳନ ଯେଉଁମାନେ କରଇବେ ସେମାନେ ପ୍ରଗତିବାଦୀ ଏବଂ ଆଧୁନିକ ।

ଭାରତବର୍ଷରେ ପ୍ରଗତିବାଦୀ ଏବଂ ଆଧୁନିକତା ସହିତ ଜାତିଆଣ ପ୍ରତିଯୋଗିତା ଏବଂ ଅର୍ଥନୀତିକ ପ୍ରତିଯୋଗିତା ସଶ୍ଳିଷ୍ଟ । ଏଥିମଧ୍ୟରୁ ଓଡ଼ିଶାରେ ବ୍ରାହ୍ମଣ-କରଣ ଓ ବ୍ରାହ୍ମଣ-ଖଣ୍ଡାୟତ ବିବାଦଟି ଉପରେ ଉପରେ ଗୌଣ ବୋଲି ଧରି ନିଆଯାଇ ଅର୍ଥନୀତିକ ପ୍ରତିଯୋଗିତାଟିକୁ ମୁଖ୍ୟ ବୋଲି ଗ୍ରହଣ କରାଯାଇଅଛି । ଏଣୁ ଆଧୁନିକତା ଏଇଠି ଆସେ ପଇସା ଦ୍ୱାରା । ପଇସା ଥିଲେ ଶିକ୍ଷା, ଯୋଗ୍ୟତା ଓ ମୂଲ୍ୟବୋଧ ଆଦୌ ଆବଶ୍ୟକ ହୁଏ ନାହିଁ । "ପାଓ୍ୱାର" ଆପେ ଆପେ ଆସେ । ଆମ ଲୋକ-କଥାରେ "ଅଗାଣ୍ଡିଆ ରଜା ଓ ପାଜିବିଣ୍ଡା" ମନ୍ତ୍ରୀ ବହୁତ ଅଛନ୍ତି । ଯଦି ଆମ ଖଳ-ନାୟକ ଶାସକମାନେ ଏପରି ହେବେ ତାହାହେଲେ ବିଶେଷ କ୍ଷତି ନାହିଁ ।

ସ୍ୱାଧୀନୋତ୍ତର ସମାଜର ଅର୍ଥନୀତି ଓ ରାଜନୀତିରେ ଏଇ ଯୋଉ ରୂପାନ୍ତର ଘଟିଲା ତା'ର ନଗ୍ନ ସ୍ୱରୂପ ବହୁ ଜ୍ଞାନୀ ଲୋକ ଅର୍ଥନୀତି ଓ ରାଜନୀତି ବିଜ୍ଞାନ ପଢ଼ିଲେ ଏବଂ ପ୍ରଶାସକ ହେଲେ । ଇତିହାସ ମାର୍କା କୁଶାସକଙ୍କ ସଂଖ୍ୟା ବୋଧହୁଏ କମ୍ ।

ଅର୍ଥନୀତି ଓ ରାଜନୀତି ବିଜ୍ଞାନ ଶିକ୍ଷା ସହିତ ନେତା ଓ ପ୍ରଶାସକମାନଙ୍କୁ ଯୋଡ଼ିବା ପଛରେ ଏକ ମନସ୍ତାତ୍ତ୍ୱିକ କାରଣ ଅଛି । ଏପରି ଏକ ମନସ୍ତାତ୍ତ୍ୱିକ କାରଣ ସମ୍ପ୍ରତି ବାଣିଜ୍ୟ ଶିକ୍ଷା ସହିତ ଜଡ଼ିତ । ଗତ ଦଶବର୍ଷ ଧରି ମୁଁ ଦେଖୁଛି ବିଜ୍ଞାନ ପଢ଼ିବା ପିଲାଗୁଡ଼ିକ ଶ୍ରେଣୀରେ ଉପସ୍ଥିତ ରହୁ ନାହାନ୍ତି ବୋଲି ଶିକ୍ଷକମାନଙ୍କ ସାଧାରଣ ସଭା (ଷ୍ଟାଫ୍ କାଉନ୍‌ସିଲ୍)ରେ ଆଲୋଚନା କରାଯାଉଛି । ସେହିପରି ୧୦ ବର୍ଷ ତଳେ ସବୁଠାରୁ ବିଶୃଙ୍ଖଳିତ ବୋଲି କୁହାଯାଉ ଥିବା ବାଣିଜ୍ୟ ବିଭାଗରେ ବର୍ତ୍ତମାନ ସବୁଠାରୁ ଭଲ ଛାତ୍ରମାନେ ପଢ଼ିବାକୁ ଆସୁଛନ୍ତି ଏବଂ ସବୁଠାରୁ ବେଶୀ ଶୃଙ୍ଖଳିତ ସେମାନେ । ଏହାର ଅର୍ଥ ସଭ୍ୟତାର ଦୃଷ୍ଟିଭଙ୍ଗୀରେ ଓ ମୂଲ୍ୟବୋଧ ବିଚାରରେ ପରିବର୍ତ୍ତନ ।

ଏଇ ନାଟକର ନାୟକ ଅଧ୍ୟାପକ ନିଶିକାନ୍ତ କିନ୍ତୁ ବାଣିଜ୍ୟ କିମ୍ବା ରାଜନୀତି ବିଜ୍ଞାନର ଅଧ୍ୟାପକ ନଥିଲେ । ସେ ଥିଲେ ସାହିତ୍ୟ ଅଧ୍ୟାପକ । ତେଣୁ ତାଙ୍କର ମୂଲ୍ୟ-ବୋଧଭିତ୍ତିକ ସନ୍ତୁଳନରେ ଅଭାବ ଥାଇପାରେ । ସମାଜର ଗତି ଯେଉଁ ଆଡ଼େ, ସେ ତାହାର ବିପରୀତ ଦିଗରେ ଯାଇଥାଇ ପାରନ୍ତି । ପ୍ରତିକୂଳ ସ୍ରୋତରେ ଯାଇ ପୃଥିବୀର ସବୁଠାରୁ ବଡ଼ ଜୀବ ଡାଇନୋସେରସ୍ ମଧ୍ୟ ନିର୍ଶ୍ଚିହ୍ନ ହୋଇ ଯାଇଛି । ଏଣୁ ଜଣେ ସାହିତ୍ୟ ଅଧ୍ୟାପକର ସ୍ଥିତି ବା କ'ଣ ହୋଇପାରେ । ୧୯୬୭ ମସିହା ବେଳକୁ ସେ ଜାଣିପାରି ନଥିଲେ ଯେ କେବଳ ଆଦର୍ଶ ଓ ମୂଲ୍ୟବୋଧକୁ ନେଇ ଜଣେ ବ୍ୟକ୍ତି ବଞ୍ଚିବା ସମ୍ଭବପର ନୁହେ ।

ଆଜିକାଲିର ଅଧ୍ୟାପକଙ୍କ ପରି ନିଶିକାନ୍ତ କୋଚିଂସେଣ୍ଟର ଖୋଲି ନଥିଲେ କିମ୍ବା ଘରେ ଦଳେ ଛାତ୍ରଙ୍କୁ ଟିଉସନ୍ ପଢ଼ାଇ ଅପର୍ଯ୍ୟାପ୍ତ ଅର୍ଥ ରୋଜଗାର କରୁନଥିଲେ ।

ପ୍ରକୃତରେ ୧୯୬୭ ମସିହା ବେଳକୁ ଜୀବନ ଏକ "ବାଣିଜ୍ୟିକ ବସ୍ତୁ"ରେ ପରିଣତ ହୋଇ ନଥିଲା, ହୃଦୟ କାଡ଼ିଆଜ୍ ଓ୍ୱାର୍ଡ଼ରେ ମିଳୁଥିବା ଏକ ବସ୍ତୁ ନଥିଲା କିମ୍ବା "ପ୍ରେମ" ବାତ୍ୟା ଅଞ୍ଚଳରୁ ଲେନ୍ ପାଇଁ ଆସିଥିବା ଗୋଟିଏ ଶିକ୍ଷିତ ଝିଅର "ଯୋନି" ନଥିଲା। ପ୍ରଶାସକମାନେ ଏଇ ଅବକ୍ଷୟ ଆଣିଲେ ବୋଲି କହିଲେ ସେମାନେ ଘୋଷିଥିବା ମୋଟା ସାଧାରଣ ଜ୍ଞାନ ଗ୍ରନ୍ଥର ଅପମାନ ହବ। ତେଣୁ ଆମେ କହିବା —ଆଦୌ ପାଠ ଓ ମୂଲ୍ୟବୋଧରେ ଆଗ୍ରହ ରଖୁନଥିବା ନେତାମାନେ ଶାସନର ଉଚ୍ଚ ଚୌକୀରେ ବସିବାରୁ ଏପରି ହେଲା। ଭଗବତରେ ମଧ୍ୟ ଏ କଥା ଲେଖା ହୋଇଥିଲା। "ନୀଚେ ପାଇଲେ ଅଧିକାର/ଋଷିଙ୍କୁ ବୁହାଇବେ ଭାର।" ମୁଁ ଯଦି ଗେରୁଆ ଲୁଗା ଓ ଦାଢ଼ି ପିନ୍ଧିଥାନ୍ତି, ତା'ହେଲେ କହିଥାନ୍ତି—ବହୁ ନୀଚ ଲୋକ (ହୋଇ ପାରନ୍ତି ନୀଚ ଜାତି ବା ପ୍ରକୃତିର ଲୋକ) ଉଚ୍ଚ ଆସନରେ ବସି ପାରନ୍ତି, ଗାଡ଼ି ଚଢ଼ି ପାରନ୍ତି ଏବଂ କୋଠା କରି ପାରନ୍ତି—କିନ୍ତୁ ପ୍ରକୃତିଟି ତାଙ୍କର ଘୃଣ୍ୟ ନୀଚ ଜାତୀୟ ହୋଇ ରହିବା ଅବଶ୍ୟମ୍ଭାବୀ। ସେମାନେ "ଋଷି" ବା ଆଜିକାଲିର ଶିକ୍ଷକମାନଙ୍କୁ ଭାର ବୁହାଇବା କୁଲି ପରି ବ୍ୟବହାର ଦେଖାଇବା ପାଇଁ ବାଧ୍ୟ।

"ହେ ପୃଥିବୀ ବିଦାୟ" ନାଟକର ନାୟକକୁ ଖଳନାୟକ ଭାର ବୁହାଇବା କୁଲି ଭଳି ବ୍ୟବହାର କରିଛନ୍ତି ଏଇ ନାଟକରେ। କେହି କେହି ଏହାକୁ "ଅତ୍ୟାଚାର" "ଶୋଷଣ" ଏବଂ "ଏକ୍ସ୍‌ପ୍ଲଇଟେଶନ୍" ବୋଲି କହିବେ। ଏମିତି କହିଲେ "ଏଷ୍ଟାବ୍ଲିଶ୍‌ମେଣ୍ଟ୍" ସହ "କଂପ୍ରୋମାଇଜ୍" କରି ଜୀବନ ବଞ୍ଚୁଥିବା ଲୋକେ କହିବେ ଏଗୁଡ଼ା "ଅଭଦ୍ର" (କମ୍ୟୁନିଷ୍ଟିଆ ଭାଷା) ଭାଷା। ଆପଣମାନେ ଜାଣିଥାଆନ୍ତୁ କି ନଥାଆନ୍ତୁ "କମ୍ୟୁନିଷ୍ଟ" ଶବ୍ଦକୁ ଓଡ଼ିଶାର "ଚତୁର" ଲୋକେ ଅଭଦ୍ରମାନଙ୍କ ସହ ସମାନ କରିଥାନ୍ତି। ସାମାଜିକ ଦୁର୍ନୀତି ଓ ନିର୍ଯ୍ୟାତନା ବିରୁଦ୍ଧରେ ସଂଗ୍ରାମ କରୁଥିବା ଲୋକଙ୍କୁ ଅସନ୍ତୁଷ୍ଟ ଗୋଷ୍ଠୀ ବୋଲି କୁହାଯାଏ। ପରୀକ୍ଷା କଲେ ଜଣାଯିବ ଯେ ଏପରି କହୁଥିବା ଲୋକମାନେ ବିପ୍ଳବୀ ଲୋକମାନଙ୍କୁ ମୁଖ୍ୟ ତାଲିକାରୁ ବହିଷ୍କାର କରନ୍ତି।

ଏଇଠି କୌଣସି ଚାକିରି ବା ପଦବୀକୁ ଅଧ୍ୟାପକ ନିଶିକାନ୍ତ ଅବମାନନା କରିନାହାନ୍ତି। ସେ ଭଲ ଭାବରେ ଜାଣନ୍ତି ଯେ ଅଧ୍ୟାପକମାନେ ବିପ୍ଳବ କଲେ ନେତାମାନେ ସାଙ୍ଗେ ସାଙ୍ଗେ କହିବେ, "ଅଧ୍ୟାପକମାନେ ଋଷି ପ୍ରତିମ ଓ ଗୁରୁ ସ୍ଥାନୀୟ ବ୍ୟକ୍ତି। ସମାଜର ନୈତିକ ମାନଦଣ୍ଡକୁ ଆମେ ଧରେଇ ଦେଇଚୁ ସେମାନଙ୍କ ହାତରେ ଏବଂ ସେମାନେ ଯଦି ଏପରି ବିପ୍ଳବ କରନ୍ତି ତା' ହେଲେ—..."(ଭଲ (ଅଭି) ନେତା ହୋଇଥିଲେ ବର୍ତ୍ତମାନ "ଦେଶ ଭାସିଯିବ" ବୋଲି ଦୁଃଖରେ କହି ନ ପାରି କୋହ ଓ ଲୁହ ନିର୍ଗତ କରାଇବେ)। ତେଣୁ ଶେଷକୁ ନିଶିକାନ୍ତ ନିଜ ମାନସିକ ଚାପକୁ ନିଜେ ସମ୍ଭାଳି ନ ପାରି ହୃଦ୍‌ରୋଗରେ ପ୍ରାଣ ବିସର୍ଜନ କରିଛନ୍ତି, କିନ୍ତୁ ବର୍ତ୍ତମାନର

ସମାଜ ବ୍ୟବସ୍ଥା ଭିତରେ ଯୋଉ ସ୍ତରର ଦର୍ଶକ ନାଟକ ଦେଖିବାକୁ ଆସିବେ ସେମାନେ କହିବେ "ଆହା ! ବିଗ୍ରାଗ ମାଷ୍ଟର ମରିଗଲ, ଯଦି ନେତାଟିଏ ହେଇଥାନ୍ତା, ତା' ହେଲେ ଯା' ନାଁରେ ଗୋଟେ ଛକ କିମ୍ବା ବଜାର ନାମିତ ହୋଇଥାନ୍ତା । ନ ହେଲେ ଗୋଟେ ଷ୍ଟାଚ୍ୟୁ ତିଆରି କରଯାଇଥାନ୍ତା ଓ ତା' ଉପରେ ଚଢ଼େଇମାନେ ପୁରୀଷ ତ୍ୟାଗ କରିଥାନ୍ତେ ।"

କିନ୍ତୁ କଥାଟା ଏଇଠି ମଧ୍ୟ ନାହିଁ । ଅଛି "ଅହଂ"ର ଟକର ଟକରିରେ । ଏଡ଼େ ବଡ଼ G.K. ବହି ଆମେ ଘୋଷିଲୁ, ଏଡ଼େ ବଡ଼ିଆ ଚେହେରର ଝିଅକୁ ବାହା ହେଲୁ । ବାହାରେ ରହି ପୁଅଝିଅଙ୍କୁ ଇଂରେଜୀ ଆଉ ହିନ୍ଦୀ ପଢ଼େଇଲୁ—ତଥାପି ଆମକୁ 'ନାୟକ' ବୋଲି ନ କହି 'ଖଳନାୟକ' ବୋଲି କୁହାଯାଉଛି ? ଏତେ ବଢ଼ିଆ ବ୍ୟବହାର ଦେଖେଇଲୁ—ମଝିରେ ମଝିରେ ନିଜ ପାଣ୍ଡିତ୍ୟ ଏବଂ କର୍ମ କୁଶଳତାର ପରିଚୟ ଦେଲୁ—ତଥାପି ଆମକୁ ହିରୋ ବୋଲି କହିଲେ ନାଇଁ ?

କିନ୍ତୁ ଡ଼େମୋକ୍ରାସୀରେ ବିଭିନ୍ନ ପ୍ରକାର 'ନାୟକ' ମିଳିଯାଇବେ ଏବଂ କେହି ଜଣେ ହେଲେ ନାୟକ ହୋଇ ପାରିବେ ନାହିଁ ବୋଲି ମାଳିକା କହୁଛି । ମାଳିକା ପଢ଼ିବା ଆଗରୁ ଆଉ ଖଣ୍ଡେ ପୁସ୍ତକ ପଢ଼ିଥିଲି । ବହିଟିର ନାଁଟା ହେଲ : Circles without centre : Paths to the discovery and creation of self in modern literature. ଏ ବହିଟିର ଲେଖକଙ୍କ ନାଁ । Enrico Garzili (I.A.S. ହବାକୁ ହେଲେ ଏ ବହି ପଢ଼ିବା ଦରକାର ନାହିଁ । Dun Schoolରେ ପଢ଼ିଥିଲେ ମଧ୍ୟ ଏମିତି ଗୋଟେ ବହି ପଢ଼ି ପାରିଥିବ ବୋଲି କିଛି ଗ୍ୟାରେଣ୍ଟି ନାହିଁ । ବହି ପଢ଼ିବା ଆଉ ପଢ଼ିଛି ବୋଲି ଫୁଟାଣି ମାରିବା ଗୋଟେ ମାଷ୍ଟ୍ରିଆ inferiority complex ! ନ ହେଲେ ବହି ପଢ଼ିକି କ'ଣଟେ ଏମିତି ଓଲଟି ଯିବ ? ପଲିଥିନ୍ ସ୍କାମ୍ କଲେ ତ ଦଶ କୋଟି ମିଳୁଚି ବୋଲି ଲୋକେ କହିଲେଣି ।) ଏଇ ବହିଟିର ଉପକ୍ରମ ଶୈଳୀରେ ଲେଖା ହେଇଚି Loss of identity of modern man (how man's best images, his heroes have suffered eclipse) । ମୁଁ ଯେହେତୁ ମୋର ବନ୍ଧୁ I.A.S. ମାନଙ୍କୁ ଶାନ୍ତ୍ୱନା ଦେଇ ପାରିବି ନାହିଁ......ତାଙ୍କୁ ନାୟକତ୍ୱ ପ୍ରାପ୍ତି ନ ହେବାର କାରଣ ଗୁଡ଼ିକୁ କିଛି "କୋଟେଶନ୍" ମାଧ୍ୟମରେ ଗୁରୁ ଗମ୍ଭୀର କରିବା ପାଇଁ ଚେଷ୍ଟା କରିବି । ଫଳରେ ସେମାନେ କହିବେ :"Actually ନାୟକ ନ ହୋଇ ପାରିବା ପାଇଁ ଆମେ ନିଜେ ଦାୟୀ ନୋହୁ । ଆମ ଲୋକମାନେ ଈର୍ଷା ପରାୟଣ ଏବଂ ଗୋଡ଼ ଟାଣିବାରେ ଓସ୍ତାଦ, ପ୍ରଶଂସା ପାଉଥିବା ଲୋକଟାର ଇମେଜ ନଷ୍ଟ କରିବାକୁ ଏମାନେ ଯିବେ । କାହାରିକୁ ପ୍ରଶଂସା କରିବା ଜାଣନ୍ତି ନାଇଁ ।

ନାୟକମାନେ କିଏ...... ! ମଣିଷ ସମାଜ ପାଇଁ ନାୟକଟାର କ'ଣ ଦରକାର...? ନାୟକମାନେ ଖଣ୍ଡାୟତ ନା ବ୍ରାହ୍ମଣ ନା ସେଡ଼ିଉଲ୍ ଡ଼୍ କାଷ୍ଟ୍ ? ଏ ଗୁଡ଼ା ଜାଣିବା ପାଇଁ ତୁରନ୍ତ ଗୋଟେ କୋଟେଶନ୍ ଦରକାର : Enrico Garzilli ଲେଖିଲେ, "Linked to an understanding of man is the concept of the hero, to the extent that a hero represents the perfect or great man. Man looks at the hero for his own definition. But both man and the hero have suffered an eclipse in the contemporary experience. Man has been reduced to a means, an object or thing × × × × yet the kind of hero that is revered is often an excellent barometer in defining the type of mythology and value system of a particular culture. While the myth and the hero crumble together, man persists, forced, however, to see his best reflections in new myths and heroes. (P.2. Intro.)

Enrico Garzilli ଯାହା କହିଲେ ଆମ ଓଡ଼ିଶାର ସାମାଜିକ ପ୍ରେକ୍ଷାପଟରେ ମଧ୍ୟ କଥାଟି ସତ । ସବୁ ଭବମୂର୍ତ୍ତି ଭଙ୍ଗି ଗଲଣି ମଣିଷର । ବାତ୍ୟା-ବେଳେ ଆମେ ଦେଖିଲୁ ସେମାନଙ୍କର ଶବଗୁଡ଼ାକ କେମିତି ପଶୁମାନଙ୍କ ସାଙ୍ଗରେ ଏକ ହୋଇ କାଦୁଅରେ ଗଡ଼ୁଥିଲ । କେତେ 'ହିରୋ' ସେଇଠି ମରିନଥିବେ ! ଏଣୁ ପ୍ରତିଥର ଆମ ସମାଜ ଗୋଟିଏ ଗୋଟିଏ ନୂଆ 'ନାୟକ' ତିଆରି କରେ ଏବଂ ନୂଆ ନାୟକ ସମ୍ପର୍କରେ ଗୋଟାଏ ଗୋଟାଏ "ମିଥ୍" ମଧ୍ୟ ତିଆରି ହୁଅନ୍ତି । ବର୍ତ୍ତମାନ ଦେଖାଯାଉ 'ହିରୋ' ବା 'ନାୟକ' କେତେ ପ୍ରକାରର :

କ) ଆତ୍ମତ୍ୟାଗ କରୁଥିବା ନାୟକ : ଏମାନେ ମହାତ୍ମା ଗାନ୍ଧୀ ଆରିଷ୍ଟୋଟଲ, ଯୀଶୁଖ୍ରୀଷ୍ଟ, ଗୋପବନ୍ଧୁ କିମ୍ବା 'ହେ ପୃଥିବୀ ବିଦାୟ' ନାଟକର ନାୟକ ।

ଖ) କ୍ରୀଡ଼ାବିତ୍ ନାୟକ : କ୍ରିଜ୍ ଉପରେ ଠିଆ ହୋଇ ଜୀବନସାଗ ଏମାନେ ବ୍ୟାଟିଂ କରିବା ଭଗ୍ୟ ନେଇ ଜନ୍ମ ହୋଇଥାଆନ୍ତି । ଏମାନଙ୍କୁ ନେଇ ଟି.ଭି. ଓ ସିନେମାରେ ବିଜ୍ଞାପନ ନିର୍ମାଣ କରଯାଏ ।

ଗ) ଚଳଚ୍ଚିତ୍ରର ନାୟକ : ଏକଦା ଏମାନଙ୍କୁ ନିଟୋଳ ନାୟକ ଆଖ୍ୟା ଦିଆଯାଉଥିଲ । ଆଜିକାଲି ସ୍କ୍ରୀନପରଦା, ଯାତ୍ରା ଓ ନାଟକମାନଙ୍କର ନାୟକମାନଙ୍କୁ ମଧ୍ୟ ଏହି ପର୍ଯ୍ୟାୟରେ ତାଲିକାଭୁକ୍ତ କରଯାଏ ।

ଘ) ଅନ୍ତରୀକ୍ଷର ନାୟକ : ଆଧୁନିକତାର ବୈଜ୍ଞାନିକ ପତାକା ଉଡ଼ାଇ ଏମାନେ ଚନ୍ଦ୍ର ଓ ମଙ୍ଗଳ ଗ୍ରହକୁ ମଧ୍ୟ ଯାଆନ୍ତି ।

ଙ) ଗୁରୁ ନାୟକ : ଭରତରେ ଶ୍ରୀ ଅରବିନ୍ଦଙ୍କଠାରୁ ଆରମ୍ଭ କରି ବାବା ସତ୍ୟସାଇ, ଚନ୍ଦ୍ରାସ୍ୱାମୀ ଓ ଆଶାରାମ୍ ପ୍ରଭୃତି ଏହି ଶ୍ରେଣୀର ନାୟକ । ଆପଣମାନେ ଯଦି "ହେ ପୃଥିବୀ ବିଦାୟ"ର ନାୟକଙ୍କୁ ଏହି ଶ୍ରେଣୀର ବୋଲି ଗ୍ରହଣ କରନ୍ତି, ତା'ହେଲେ ଆପତ୍ତି ନାହିଁ ।

ଚ) ରଣ୍ଟାକଡର 'ହିରୋ' : ଏମାନେ କଲେଜ କ୍ୟାମ୍ପସ୍‌ରେ ବୋମା ଫୁଟେଇ, ଛୁରା, ଭୁଜାଲି ଧରି ହିରୋ ହୁଅନ୍ତି । କ୍ରମଶଃ ରାଜନୀତିରେ ପ୍ରବେଶ କରନ୍ତି ।

ଛ) ନିତ୍‌ସେ ଓ ବର୍ଣ୍ଣାଡ୍‌ଶ'ଙ୍କ ସୁପରମ୍ୟାନ୍ : ଏମାନେ କ୍ଷମତା ପାଇବା ପାଇଁ ଯାବତୀୟ ନାୟକ ସୁଲଭ କାର୍ଯ୍ୟ କରିଥାନ୍ତି ।

ଜ) ବିପ୍ଳବୀ ନାୟକ : ବାଇବେଲ୍‌ର ଆଡ଼ାମ୍, ମିଲ୍‌ଟନ୍‌ଙ୍କ ଲୁସିଫର୍ ଓ ଶେଲିଙ୍କ ପ୍ରମେଥିୟସ୍ ପ୍ରଭୃତି ଜଗତକର୍ତ୍ତାଙ୍କ ବିରୁଦ୍ଧରେ ଲଢ଼େଇ କରନ୍ତି । ଏମାନଙ୍କୁ ବିପ୍ଳବୀ ନାୟକ କୁହାଯାଇପାରେ ।

ଉପରେ ଯେଉଁ ଆଠ ପ୍ରକାରର ନାୟକ କଥା କୁହାଗଲା ସେମାନେ ସମସ୍ତେ ଷଷ୍ଠ ଦଶକର ସାମାଜିକ ପ୍ରେକ୍ଷାପଟରୁ ଉତ୍ପନ୍ନ । ଆଜି ଯେଉଁମାନେ ନାୟକ ପଦବାଚ୍ୟ ସେମାନଙ୍କ ପାଇଁ ଆଜିର ସମାଜର ସାଧାରଣ ଗ୍ରୁପଟିଏ କିନ୍ତୁ ଉପରୋକ୍ତ ଆଠ ପ୍ରକାରର ନାୟକ ତାଲିକା ଧରି ପର୍ଯ୍ୟାୟଭୁକ୍ତ କରିପାରିବେ ନାହିଁ । ଅଧ୍ୟାପକ ନିଶିକାନ୍ତଙ୍କ ପାଇଁ ଏହି ତାଲିକାଟି ବର୍ତ୍ତମାନର ପ୍ରେକ୍ଷାପଟରେ ସାମାନ୍ୟ ପୁରୁଣା ମନେ ହୋଇପାରେ । ଏହାର ଏକମାତ୍ର କାରଣ ହେଲା ଆଜିର ସମାଜ ଏକ ସମୂହ ବା ଗୋଷ୍ଠୀ ସମାଜ । ଇଂରାଜୀରେ ଏଇପରି ଏକ ସମାଜକୁ Mass society କୁହାଯାଏ ।

ବର୍ତ୍ତମାନ Mass society ବା "ସମୂହ ସମାଜ"ର ପ୍ରେକ୍ଷାପଟରେ ନିଶିକାନ୍ତଙ୍କ ଅପେକ୍ଷା ତାଙ୍କର ବିରୋଧୀଦଳରେ ଥିବା ଆଇ. ଏ. ଏସ୍. ମାନଙ୍କ କାଟ୍‌ତି ବେଶୀ । ଟଙ୍କା ପାଇଁ ନିଜର ବ୍ୟକ୍ତିତ୍ୱ, ଜ୍ଞାନବୋଧ ଏବଂ ନୈତିକତାକୁ ବିକ୍ରୀ କରିଦେବା ଲୋକଙ୍କ ସଂଖ୍ୟା ବେଶୀ । ଏପରି ବହୁସଂଖ୍ୟକ ଲୋକ ସଂସ୍କୃତି ସମ୍ପର୍କରେ ଯେଉଁ ମତ ପୋଷଣ କରନ୍ତି ତାହା ହିଁ ସାମ୍ପ୍ରତିକ ସଂସ୍କୃତି ଏବଂ ସେଠାରେ ଜଣେ ଆଦର୍ଶବାଦୀ ଅଧ୍ୟାପକର ସ୍ଥିତି କେଉଁଠି ଜାଣିବା ଆବଶ୍ୟକ । କାରଣ ସମୂହ ସମାଜ ବା ଗୋଷ୍ଠୀ ସମାଜରେ ବ୍ୟକ୍ତିତ୍ୱ ପ୍ରସଙ୍ଗଟି କ୍ରମଶଃ ଅନାବଶ୍ୟକତା ଆଡ଼କୁ ଗତି କରିବା ଲକ୍ଷ୍ୟ କରଯାଉଅଛି ।

ସମୂହ ବା ଗୋଷ୍ଠୀ ସମାଜରେ ସମସ୍ତେ ସମାନ । ଗଣତନ୍ତ୍ରରେ ମଧ୍ୟ ସମସ୍ତଙ୍କର ସମାନ ଅଧିକାର ଅଛି । ସମାଜବାଦରେ ମଧ୍ୟ ସମସ୍ତେ ସମାନ । ଅର୍ଥାତ୍

ଏପରି ଏକ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହେଲେ ସମସ୍ତେ ସମାନ ପୋଷାକ ପିନ୍ଧିବେ, ସମସ୍ତେ ସମାନ ଖାଦ୍ୟ ଖାଇବେ ଏବଂ ଯାହା ସର୍ବସମ୍ମତି କ୍ରମେ ଗ୍ରହଣଯୋଗ୍ୟ ହେବ ସେପରି ଏକ ସାଂସ୍କୃତିକ ଆଭିମୁଖ୍ୟ ରଖିବେ । ଏହି ସମାଜରେ 'ସାଂସ୍କୃତିକ ସମାନତା' ରକ୍ଷା କରଯାଏ । ଏଣୁ cultural diversity ବା ସାଂସ୍କୃତିକ ବିଭିନ୍ନତା ପାଇଁ ଏଠାରେ ଅବକାଶ ନାହିଁ । ଆଗରୁ ସମାଜରେ କିଛିଲୋକ ଧନତନ୍ତ୍ରକୁ ପ୍ରାଧାନ୍ୟ ଦେଇ ବଞ୍ଚୁଥିଲେ ବେଳେ ଆଉ କିଛି ଲୋକ ଶିକ୍ଷାଗତ ଯୋଗ୍ୟତାକୁ ପ୍ରାଧାନ୍ୟ ଦେଉଥିଲେ । କିଛି ଲୋକ ନୃତ୍ୟ ଓ ସଙ୍ଗୀତ ଶିକ୍ଷା କରି ଏକ ସ୍ୱତନ୍ତ୍ର ଶୈଳୀକୁ ଆପଣାଉ କଲାବେଳେ ଆଉ କିଛି ଲୋକ ଡାକ୍ତରୀ ପଢ଼ୁଥିଲେ କିମ୍ବା ସମାଜସେବା କରୁଥିଲେ କିମ୍ବା କ୍ରୀଡ଼ାବିତ୍ ହେଉଥିଲେ । କିନ୍ତୁ ବର୍ତ୍ତମାନ 'ସମୂହ ସମାଜ'ରେ ଏପରି ବୈଚିତ୍ର୍ୟ ପାଇବା ମୁସ୍କିଲ୍ ।

ଏଣେ ସମୂହ ସମାଜର ମାନଦଣ୍ଡ ବାରମ୍ବାର ବଦଳି ଚାଲେ । ଉଦାହରଣ ସ୍ୱରୂପ ୨ ବର୍ଷ ତଳେ 'କ୍ଲୋଜ୍ଅପ୍ ଟୁଥ୍ପେଷ୍ଟ' କିମ୍ବା 'କଲ୍ଗେଟ୍ ଟୁଥ୍ପେଷ୍ଟ' ଘଷିଲେ ଦାନ୍ତର ସୁରକ୍ଷା ଚକ୍ର ମିଳୁଥିଲା ବୋଲି ଲୋକେ ବିଶ୍ୱାସ କରୁଥିଲେ । ବର୍ତ୍ତମାନ AIM ଟୁଥ୍ପେଷ୍ଟ ଘଷିବା ଆବଶ୍ୟକ ହେଲଣି । ସେମିତି fair and lovely କିମ୍ବା ଯେକୌଣସି ବିଜ୍ଞାପିତ ସାମଗ୍ରୀର ମାନଦଣ୍ଡ ଥରକୁ ଥର ବଦଳି ଚାଲେ ଏବଂ ଏଥି-ପାଇଁ ଦୂରଦର୍ଶନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦିନକୁ ଦିନ ନୂଆ ନୂଆ ରୁଚିକୁ ପ୍ରଚାର କରି ସମୂହ ସମାଜର ଚାହିଦାର ମାନଦଣ୍ଡ ବଢ଼ାଇବା ଏହାର ଲକ୍ଷ୍ୟ ।

ପୁନଶ୍ଚ ଗଣତାନ୍ତ୍ରିକ ସମାଜରେ "ସମସ୍ତଙ୍କର ସମାନ ଅଧିକାର" ଅଛି ବୋଲି କୁହାଯିବାରୁ ନେତୃସ୍ଥାନୀୟ ଲୋକେ ଏବଂ କିଛି ତଥାକଥିତ ବୁଦ୍ଧିଜୀବୀ କହିଲେ ଯେ "ସବୁ ସାମାଜିକ ଭିନ୍ନତାକୁ ଭାଙ୍ଗି ସମତୁଲ କରି ଦିଆଯାଉ;" ନହେଲେ "ଆନ୍ଦୋ-ଳନ ଚାଲୁ ରହିବ ।" ସାମାଜିକ ଭିନ୍ନତା ବା ବହୁମୁଖୀତା (social pluralism)କୁ ଭାଙ୍ଗି ଦେଲେ ସମୂହ ସମାଜ ବିପଦ ସଙ୍କୁଳ ହୋଇଯାଏ ବୋଲି ଆମର ଧାରଣା ନାହିଁ ।

ଗୋଷ୍ଠୀ ସମାଜ ବା communal society ରେ ଏପରି ବିପଦ ଦେଖା-ଯାଏ ନାହିଁ । ଯେଉଁମାନଙ୍କୁ ଆମେ ସଂଖ୍ୟାଲଘୁ ଗୋଷ୍ଠୀ ବୋଲି କହୁଚୁ ସେମାନଙ୍କର ବିଶେଷ ଅସୁବିଧା ହୁଏନାହିଁ । କାରଣ ଗୋଟିଏ ନିର୍ଦ୍ଦିଷ୍ଟ ଧାର୍ମିକ, ରାଜନୈତିକ ବା ସାଂସ୍କୃତିକ ଗୋଷ୍ଠୀର ଯେଉଁ ପରମ୍ପରା ଅଛି ତାକୁ ମାନିବାକୁ ସେମାନେ ବାଧ୍ୟ । ଏହା ଫଳରେ ଗୋଷ୍ଠୀ ସମାଜର ଲୋକମାନେ ଯୁଗର ପରିବର୍ତ୍ତନ ସହିତ ନିଜକୁ ପରିବର୍ତ୍ତନ କରିପାରନ୍ତି ନାହିଁ ।

ରଜା ରଜୁଡ଼ା ଶାସନ ଓ ଏକଛତ୍ର ଶାସନ ବ୍ୟବସ୍ଥାରେ ମଧ୍ୟ "ସର୍ବେ ହୁଅନ୍ତି ଏକାକାର।" ସର୍ବେ "ଏକାକାର" ହୋଇଗଲେ ମନେ ହେବ ସମସ୍ତେ 'ଯନ୍ତ୍ର' ବା 'କଣ୍ଢେଇ'। ଏଠାରେ ବିଭିନ୍ନ ରୁଚି ଅନୁଯାୟୀ ବିଭିନ୍ନ ଦଳ ଗଠିତ ହେବା ଅସମ୍ଭବ। ଏଠାରେ ଭୋଜି ହେଲେ ସମସ୍ତେ କେବଳ "ଫ୍ରାଏଡ୍ ରଇସ୍" ଓ "ଚିକେନ୍" ଖାଇବେ। ସମଗ୍ର ଭାରତବର୍ଷରେ ହୋଟେଲ ମାନଙ୍କରେ ଏକା ସ୍ୱାଦର ଖାଦ୍ୟ ହିଁ ମିଳିବ।

ଏପରି ଏକ ସଂସ୍କୃତିକୁ ସମର୍ଥନ କରିବା ପାଇଁ ଆମ ସମାଜରେ ଶତକଡ଼ା ନବେ ସଂଖ୍ୟକ ନାଗରିକ ଅଛନ୍ତି। ସମସ୍ତେ ଯାହା କରୁଛନ୍ତି ସେଇ ସ୍ରୋତରେ ଭସି ଯିବା ଶ୍ରେୟ ବୋଲି ମନେକରିବା ସଂପ୍ରଦାୟ, ଏମାନେ ସମସ୍ତେ ହଠାତ୍ ଫାଇଦା ପାଇବା ଆଶାରେ ଅଧ୍ୟାପକଙ୍କୁ ନାୟକ ନ କରି/ସମର୍ଥନ ନ କରି ଆଇ. ଏ. ଏସ୍. ଭିଲେନ୍‌ଟାଙ୍କୁ ଭୋଟ ଦେବେ। ଏମିତି ଗୋଟାଏ ଘଟଣା ଘଟିଥିଲା ଜର୍ମାନୀରେ, ସେଠାକାର କିଛି ରକ୍ଷଣଶୀଳ ଲୋକେ ସେ ସମୟର ନାଜି ଆନ୍ଦୋଳନକୁ ସମର୍ଥନ ଜଣାଇଥିଲେ। Rauschning ନାମକ ଏମିତି ଜଣେ ରକ୍ଷଣଶୀଳ ଲୋକ ୧୯୩୯ ମସିହାରେ ଏ ସମ୍ପର୍କରେ ଲେଖୁଛନ୍ତି, "...it must be recalled that the world of ideas of the nationalist, conservative, and liberal middle class and aristocracy, and of the intellectuals, had long been invaded by scepticism. The whole of these "ruling" classes, no less than the mass of the proletariat of the great towns, had been moving towards nihilism. They had ever been moving faster in that direction than the working class. Faith in traditions had been fading, faith in machinery and devices and materialism had been growing among the traditional ruling classes, and had turned them from opponents into allies of National socialism. The absence of doctrine is perhaps the strength of the Nazis; the absence of tradition in the monarchist and conservative elements is certainly their weakness." (Rauschning. 1939 p.100)

କଥାଟିକୁ ଏଠାରେ ଓଡ଼ିଆରେ ବୁଝେଇବା ଦରକାର ପଡ଼ୁଛି । ସେତିକି ବେଳକୁ ଜାତୀୟତାବାଦୀ, ରକ୍ଷଣଶୀଳ ନରମ ପନ୍ଥୀ ମଧ୍ୟବିତ୍ତ ଏବଂ ଅଭିଜାତ ଶ୍ରେଣୀ ଓ ବୁଦ୍ଧିଜୀବୀ ମାନଙ୍କର ମନ ସନ୍ଦେହ ଦ୍ୱାରା ଆକ୍ରମିତ ହୋଇସାରିଥିଲା ଅନେକ ଦିନରୁ । ସହରଗୁଡ଼ିକରେ ଥିବା କର୍ମଜୀବୀ ଶ୍ରମିକଙ୍କ ଠାରୁ ଆରମ୍ଭ କରି ସମସ୍ତ ଶାସକ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତେ ନେତିବାଦ ଏବଂ ଧ୍ୱଂସ ଆଡ଼କୁ ଆଗେଇ ଚାଲିଥିଲେ । ପରମ୍ପରା ଉପରୁ ବିଶ୍ୱାସ କମି ଆସୁଥିଲା ଏବଂ ଯନ୍ତ୍ରପାତି ଓ ତତ୍ ସମ୍ପର୍କିତ ସମସ୍ତ ଭୌତିକତା ପ୍ରତି ଆସ୍ଥା ବଢ଼ୁଥିଲା ଲୋକମାନଙ୍କର । ଶାସକମାନଙ୍କର । ତେଣୁ ସେତିକି ବେଳକୁ ଏପରି ଏକ ଆଭିମୁଖ୍ୟର ମୁକାବିଲା କରିବା ପାଇଁ ଗଢ଼ି ଉଠିଲା ଏକ ଜାତୀୟ ସମାଜବାଦ । କୌଣସି ପାରମ୍ପରିକ ନୀତି ନିୟମର ଅନୁପସ୍ଥିତି ଥିଲା ନାଜି-ମାନଙ୍କର ବଳ । କାରଣ ରକ୍ଷଣଶୀଳ ଓ ରାଜାରାଜୁଡ଼ାମାନେ ପରଂପରାକୁ ଛାଡ଼ି ସାରିଥିଲେ । ଏହା ନିଶ୍ଚିତ ଭାବରେ ତାଙ୍କ ସ୍ଥିତିକୁ ଦୁର୍ବଳ କରି ଦେଇଥିଲା ।”

ଏଇ ଇଂରାଜୀ ଉଦ୍ଧୃତି ଓ ତା’ର ଓଡ଼ିଆ ଅନୁବାଦ କରିବାର ଅର୍ଥ ହେଲା ନାଜି ଜର୍ମାନୀ ସମୟର ସାଂସ୍କୃତିକ ଅନୁଧ୍ୟାନଟି ଆମର ଷଷ୍ଠ ଦଶକର (ଏବଂ ଆଜି ପର୍ଯ୍ୟନ୍ତ) ସାଂସ୍କୃତିକ ପରିମଣ୍ଡଳ ସହ ସମାନ । ଗାନ୍ଧୀଙ୍କ ଅସ୍ପୃଶ୍ୟତା ନିବାରଣ ଯୋଜନାରେ ହିନ୍ଦୁମାନେ ଆଉ ମୁସଲମାନ ଧର୍ମ ଗ୍ରହଣ ନକରି ଆମ୍ବେଦକରଙ୍କ ନେତୃତ୍ୱରେ ବୌଦ୍ଧଧର୍ମ ଗ୍ରହଣ କଲେ । ଏଣେ ଓଡ଼ିଶାରେ ହଜାର ହଜାର ଶୂଦ୍ର ଓ ଖଣ୍ଡାୟତ ଖ୍ରୀଷ୍ଟିୟାନ ହେଇଗଲେ । ଆଦିବାସୀ ଅଞ୍ଚଳରେ ଚର୍ଚ୍ଚ ଗଢ଼ି ଉଠିଲା । ଲୋକେ ଶିକ୍ଷିତ ହେଲେ ଏବଂ ଓଡ଼ିଶାର ପରମ୍ପରାକୁ ଘୃଣା କରିବାକୁ ଲାଗିଲେ । ଉଚ୍ଚବର୍ଣ୍ଣର ଲୋକଙ୍କ ପ୍ରତି ଆକ୍ରୋଶ ମୂଳକ ବ୍ୟବହାର କଲେ । ସବୁଠାରୁ ବିପର୍ଯ୍ୟସ୍ତ ହେଲା ଅଧ୍ୟାପକ ଏବଂ ଶିକ୍ଷକମାନଙ୍କ ଜୀବନ, କାରଣ ସେମାନେ ଶିକ୍ଷାଦାନ କରୁଛନ୍ତି ଏବଂ ମଝିରେ ମଝିରେ ନୈତିକତା ଓ ମୂଲ୍ୟବୋଧର କଥା କହୁଛନ୍ତି । ଯେଉଁମାନେ ଶାସକ ଶ୍ରେଣୀ (ଅର୍ଥାତ୍ ପ୍ରଶାସନିକ ସେବାର ଦ୍ୱିପଦ ପ୍ରାଣୀ), ସେମାନେ ଶିକ୍ଷା, ନୈତିକତା ଏବଂ ପାରଂପାରିକ ମୂଲ୍ୟବୋଧକୁ ଜାତିନିର୍ବିଶେଷରେ ଲାତ ମାରି ସାରିଛନ୍ତି । ଏଣୁ ଶିକ୍ଷା ସହିତ, ଆଦର୍ଶ ଓ ମୂଲ୍ୟବୋଧ ସହିତ ସମ୍ପୃକ୍ତ ସମସ୍ତ ବ୍ୟକ୍ତି ସମାଜ ପାଇଁ ଅଦରକାରୀ ।

‘ହେ ପୃଥିବୀ ବିଦାୟ’ ନାଟକର ନାୟକ ସେହି ଦୃଷ୍ଟିରୁ ଏକ ଚିରା ଦୁଇଟଙ୍କିଆ ନୋଟ୍ । ତା’ର କାଟ୍‌ତି ନାହିଁ, ତଥାପି ଟାଉନ୍ ବସ୍ ଭିଡ଼ରେ ଚଳୁଚି । ଆଉ ଗୋଟିଏ କଥା ମଧ୍ୟ ସତ । ଆଜିକାଲି ସମ୍ମାନ ପାଇବା ଆଶାରେ ଶତକଡ଼ା ୯୦ ଭାଗ ଲୋକ ଆଦର୍ଶ, ମୂଲ୍ୟବୋଧ ଓ ଶିକ୍ଷା, ଚରିତ୍ର ଇତ୍ୟାଦିର ଆବଶ୍ୟକତା ସଂପର୍କରେ ଲମ୍ବା ଭାଷଣ ପ୍ରଦାନ କରୁଛନ୍ତି । ଏଗୁଡ଼ିକ ମୁଖା, ଏଗୁଡ଼ିକୁ “ନୈତିକ କ୍ରୀଡ଼ା” କୁହାଯିବ । ନୈତିକତାର ଏହି ଶବ୍ଦମାନଙ୍କୁ ଯେଉଁ ଛାତ୍ର ବିଶ୍ୱାସ କଲା, ସିଏ ଠକି ହେଇଯିବ । ତେଣୁ ଛାତ୍ରମାନେ ବିଶ୍ୱାସ କରିବା ଉଚିତ

ଯେ : (କ) ଯେଉଁମାନେ ଭଦ୍ର ବ୍ୟବହାର କରନ୍ତି ତାଙ୍କର ଉଦ୍ଦେଶ୍ୟ ହେଉଛି ଗୋଟିଏ ଅପରାଧ କରିବା, ତେଣୁ ଭଦ୍ର ବ୍ୟବହାର ଅପରାଧୀ ମାନଙ୍କର ମୁଖା (ଖ) ଭଦ୍ର ଭଷା ଭବକୁ ଲୁଚେଇବାର ମାଧ୍ୟମ (ଗ) ପ୍ରେମର ଭଷା ହଉଚି ଏକମାତ୍ର ପ୍ରତାରଣା ଏବଂ (ଘ) ଧର୍ମସଂସ୍ଥା ଓ ସମାଜ ସେବା କିମ୍ବା ରାଜନୀତି ହେଉଚି ଲୋକଙ୍କୁ ଠକି ନିଜର ସ୍ୱାର୍ଥ ହାସଲ କରିବା ପାଇଁ ଏକ ଭଲ ମାଧ୍ୟମ । ଏହା ଏକବିଂଶ ଶତାବ୍ଦୀର ସାମାଜିକତା ପାଇଁ ଏକ ଓଡ଼ିଆ ଶ୍ଳୋକ ପରି ଗ୍ରହଣଯୋଗ୍ୟ ।

ରମେଶ ପ୍ରସାଦ ପାଣିଗ୍ରାହୀ



ଏହା ଏକ ବହୁ ଦୃଶ୍ୟ ସମ୍ବଳିତ ନାଟକ । କିନ୍ତୁ ସୌଖୀନ ନାଟ୍ୟ ସଂସ୍ଥା ପାଇଁ ଲେଖାଯାଇ ଥିବାରୁ ଏଥିରେ ଚିତ୍ରିତ ପରଦା ବ୍ୟବହାର କରାଯାଇ ପାରିବ ନାହିଁ । ତେଣୁ ଏହାର ମଞ୍ଚନ ପାଇଁ ପେଟିକା ମଞ୍ଚ ବ୍ୟବହାର କରାଯିବା ଏକାନ୍ତ ଆବଶ୍ୟକ ହୋଇପଡ଼ୁଛି । ପେଟିକା ମଞ୍ଚର ସଜ୍ଜାଟି ନିମ୍ନମତେ କରାଯିବା ସହଜ ମନେହେବ ।

ସାମ୍ନାର ଆପ୍ରନ୍ ମଞ୍ଚରୁ ପାଞ୍ଚଫୁଟ ଦୂରରେ ଦେଢ଼ଫୁଟ ଉଚ୍ଚ ଏକ ଡ଼ାୟାସ ତିଆରି ହେବ । ଡ଼ାୟାସଟି ସମଗ୍ର ମଞ୍ଚକୁ ଅଧିକାର କରିବା ଆବଶ୍ୟକ । ପଛପଟ ସାଇକ୍ଲୋରୋମା ଆଡ଼ୁ ମଧ୍ୟ ପାଞ୍ଚଫୁଟ ଛାଡ଼ି ଏହି ଡ଼ାୟାସଟି ରହିବ । ସାମ୍ନା ପଟୁ ଦୁଇଟି ପାହାଚ ଏବଂ ପଛ ପଟୁ ଦୁଇଟି ପାହାଚ ରହିବ ଡ଼ାୟାସ ଉପରକୁ ଉଠିବା ପାଇଁ । ପଛପଟଟିକୁ ମଞ୍ଚ/ଘର ଭିତରକୁ ପ୍ରବେଶ କରିବାର ପଥ ବୋଲି ଧରିନିଆଯାଉ ।

ଡ୍ରାୟାସର ବାମପଟେ ଉପର ମହଲକୁ ଯିବା ଆସିବା କରିବା ପାଇଁ ଗୋଟିଏ ସୁନ୍ଦର ସିଡ଼ି ଅଛି । ସେଇପଟେ ଗୋଟିଏ ଆଭିଜାତ୍ୟପୂର୍ଣ୍ଣ ପଲଙ୍କ ଅଛି । ଅତଏବ, ବାମପଟଟିକୁ ସଞ୍ଜୟ ଦାସବର୍ମାଙ୍କ ଘର ବୋଲି ଧରି ନିଆଯାଉ ।

ଡ୍ରାୟାସର ଡ଼ାହାଣପଟେ ଅଧ୍ୟାପକ ନିଶିକାନ୍ତଙ୍କର ଘର । ସେଇଠି ଗୋଟିଏ ସାଧାରଣ ଖଟ ଏବଂ ଗୋଟିଏ ର୍‌ୟାକ୍‌ରେ କିଛି ବହିପତ୍ର ରହିବ । ଗୋଟିଏ କାଠ ଚୌକି ଏବଂ କାଠ ଟେବୁଲ ମଧ୍ୟ ରଖା ଯାଇପାରେ ।

ଡ୍ରାୟାସର ତଳ ମଞ୍ଚର ମଧ୍ୟଭାଗରେ ଗୋଟାଏ ସୋଫା ସେଟ୍ ପଡ଼ିଛି । ତାହାକୁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନ ପାଇଁ ଏବଂ ଉଭୟ ଘରର ଡ୍ରଇଂ ସ୍ଥାନ ରୂପେ ବ୍ୟବହାର କରଯାଇପାରେ । ଆପ୍ରନ୍ ମଞ୍ଚଟି ରାସ୍ତା କିମ୍ବା ପୁରୁଣା ନାଟକର ଅଳିନ୍ଦ ମଧ୍ୟ ହୋଇପାରେ ।

ପଛରେ ସାଇକ୍ଲୋରେମା ଏବଂ ଡ୍ରାୟାସ ତଳକୁ ଦୁଇଟି ଖୁମ୍ବ ମଧ୍ୟରେ ଏକ ଅର୍ଦ୍ଧ ଗୋଲାକାର ଟେରେସ୍‌ର ନକ୍ସା ରଖାଯାଇଛି । ଦୁଇପଟ୍ ପାଟେସ୍କି ମଧ୍ୟ ରଖାଯାଇ ପାରେ । ନାଟକ ଆରମ୍ଭ ହେଉଛି ସଞ୍ଜୟ ଦାସବର୍ମାଙ୍କ ଘରେ । ସଞ୍ଜୟ ଦାସବର୍ମା ଜଣେ ଆଇ. ଏ. ଏସ୍ ଅଫିସର । ବୟସ ପାଖାପାଖି ପଚାଶ । ସେ ଗୋଟିଏ ସୂତା କଳର ଡ଼ାଇରେକ୍‌ଟର । ତାଙ୍କର ପତ୍ନୀ ମନିକା ନିଜର ଗ୍ରାମୀଣ ସ୍ୱଭାବକୁ ଲୁଚେଇବା ପାଇଁ ମୁହଁରେ ଗାମ୍ଭୀର୍ଯ୍ୟ ପିନ୍ଧିଥିଲା ପରି ମନେ ହୁଅନ୍ତି । ପୁଅ ରଜା ଗୋଟିଏ ଅବାଧ୍ୟ ଏବଂ ଅଶାଳୀନ କିଶୋର । ବୟସ ୧୭ ଓ ସେ ପ୍ଲସ୍‌-ଟୁ ଶ୍ରେଣୀର ଛାତ୍ର । ନାଟକ ଆରମ୍ଭ ବେଳକୁ ସେ ପିନ୍ଧିଛି ଗୋଟିଏ ଧଳା ହାଫ୍‌ପ୍ୟାଣ୍ଟ୍ ଏବଂ ଏକ ନାଲି ଗେଂଜି । ସମ୍ଭବତଃ ପୋଷାକ ଗୁଡ଼ିକ ଦିଲ୍ଲୀରୁ କିଣା ହୋଇଛି । ରଜା ସିଡ଼ି ଉପରୁ ଓହ୍ଲାଇ ଓହ୍ଲାଇ ଡ଼ାକ ଛାଡ଼ିଛି ଘରର ଗୋପାଳକୁ ।

ରଜା ।। ଗୋପାଳି ! ଗୋପାଳି, ମୋର ପିକ୍‌ନିକ୍ କିଟ୍ ଆଣିଲୁ !

ଗୋପାଳ ।। (ପ୍ରବେଶ କରି) ଆଣୁଚି...ଆଣୁଚି ସାନ ବାବୁ ! ଏମିତି ଉଛନ କାଇଁକି ହଉଚ !

ରଞ୍ଜା     ।। ସାତଟା ବାଜିଗଲା ଯେ···ସାତଟା  ପନ୍ଦରରେ ମତେ ହଷ୍ଟେଲ ପାଖରେ ପହଞ୍ଚିବାକୁ ପଡ଼ିବ । ସେଇଠୁ ସବୁ ପିଲା ବାହାରିବେ । ବସ୍  ଆସିଥିବ । ଜଲ୍‌ଦି ଆମେ······

[ ଗୋପାଳ ଦୌଡ଼ି ଯାଇ ଗୋଟାଏ ଭର୍ତ୍ତିବ୍ୟାଗ୍  ଆଣି ପହଞ୍ଚିଲା ]

ଗୋପାଳ ।। ତମେ ପିକ୍‌ନିକ୍ ଯିବ ବୋଲି ଘର ମା' ଆଉ ମୁଁ ରାତି ଏଗାରଟା ଯାଏଁ ସବୁ ରଖିଲୁ କିଟ୍‌ରେ !

ରଞ୍ଜା     ।। ଟେପ୍‌ରେକର୍ଡ଼ର ଅଛି ?

ଗୋପାଳ ।। ଅଛି ।

ରଞ୍ଜା     ।। କ୍ୟାମେରା ?

ଗୋପାଳ ।। ଅଛି ।

[ ସିଁଡ଼ି ଉପରୁ ପ୍ରାୟ ଦୌଡ଼ିଲା ଭଳି ଆସିଲେ ମନିକା । ରଞ୍ଜାର ମା' । ବବ୍ କଟ ବାଳ ଓ ପରିଧାନ ଅତ୍ୟନ୍ତ ଆଧୁନିକ ରୁଚି ସମ୍ପନ୍ନ ]

ମନିକା   ।। (ସିଁଡ଼ି ଉପରୁ  ତରବରରେ  ଓହ୍ଲାଉ  ଓହ୍ଲାଉ) ରଞ୍ଜା······ରଞ୍ଜା···ତୋ'ର ପାଣି କିଟ୍ !

ରଞ୍ଜା     ।। (ପାଣି ବ୍ୟାଗ୍ ନଉ ନଉ)  ଓହୋ··  ମା'···ଏଇଟା ପାଣି କିଟ୍  ନୁହେ·· ଓ୍ୱାଟର୍ ବ୍ୟାଗ୍...

ମନିକା   ।। ଏତେ ଇଂରେଜୀ କଥା ମୋ' ପାଟିରେ ପଶୁନି...ନେ' !

ରଞ୍ଜା     ।। ଜଳଖିଆ ଦେଇଚୁ ?

ମନିକା   ।। ଦେଇଛି । ଫ୍ରେଞ୍ଚ ଟୋଷ୍ଟ୍ ଆଉ ସାଣ୍ଡଓ୍ୱିଚ୍ ଷ୍ଟୁ !

ରଞ୍ଜା     ।। ଖାଲି ମୋ' ପାଇଁ ?

ମନିକା   ।। ଆଉ ?

ରଞ୍ଜା     ।। ସମସ୍ତଙ୍କ  ପାଇଁ  ଦେ' —  କ'ଣ  ବୋଲି  ପାଇଲୁ  କି  ମତେ ? ମୋ' ବାପା ଆଇ. ଏ. ଏସ ଅଫିସର । ଅଶୋକ  ସୂତାକଳର ଡ଼ିରେକ୍ଟର ଆଉ ଏଇ ଶହୀଦ ଲକ୍ଷ୍ମଣ  କଲେଜର  ମୁଖ୍ୟ······ଆଉ  ମୁଁ  ତାଙ୍କର  ପୁଅ — ରଞ୍ଜା —!!  ବ୍ରେକ୍‌ଫାଷ୍ଟ୍ ଖାଇଲା ବେଳେ ତିନି  ଚାରି  ଜଣଙ୍କୁ  ଖୁଆଇବା କଥା କି ନାହିଁ ?

ଗୋପାଳ ।। ଠିକ୍ କଥା  ରଞ୍ଜାବାବୁ ! ମା' ! ଆଉ ଦଶ ପନ୍ଦର  ଖଣ୍ଡ ପାଉରୁଟି କଟା ଦେଇଦିଅ —

ମନିକା   ।। ତୁ' କରିଦେ' !

ଗୋପାଳ ।। ମୋ' ଦେଇ କ'ଣ ସେ ଗୁଡ଼ା ହବ ମା' ! ବରା, ପକୋଡ଼ି କହିଲେ ସାଙ୍ଗେ ସାଙ୍ଗେ ଗ୍ରୁଣିଦେବି !

ରଞ୍ଜା ।। ହେଃ ! ସେ ଗୁଡ଼ା କ'ଣ ହବ ? ମୋ' ଟାଇମ୍ ହେଇଗଲାଣି—ମୁଁ ଗ୍ଲଲିଲି ! ମା'—ଡ୍ରାଇଭରକୁ କହିଲୁ ମତେ କଲେଜରେ ଛାଡ଼ିଦେଇ ଆସିବ !

ମନିକା ।। ଚ୍ଲଲ । ତମ କଲେଜ ବସ୍ ବାଲାଙ୍କୁ କହିଲୁନି ଆମ ବଙ୍ଗଳା ଦେଇ ଗ୍ଲଲି ଯାଆନ୍ତା !

ରଞ୍ଜା ।। ନାଇଁ ନାଇଁ ଆମେ ପର ପ୍ରଧାନ ପାଟ ନିବୁ—ରସୁଲଗଡ଼ ଦେଇ କଟକ ବାଟେ—...ଏଇପଟେ ଅସୁବିଧା...ଗ୍ଲଲିଲି (ଯୋଉ ଯାଉ ଫ୍ରିଜ୍ ହେଲେ)

[ ହଠାତ୍ ପ୍ରବେଶ କଲେ ନିଶିକାନ୍ତ ମଞ୍ଚର ପଛପଟ ଗେଟ୍ ପାଖରୁ । ଡାୟାସ ଉପରେ ଦେଖାହେଲ । ନିଶିକାନ୍ତ ଶହୀଦ ଲକ୍ଷ୍ମଣ କଲେଜର ଅଧ୍ୟାପକ । ବୟସ ୫୫ ପାଖାପାଖି ]

ମନିକା ।। (ଫ୍ରିଜ୍ ଭଙ୍ଗି) ଆପଣ କୁଆଡ଼େ ମାଷ୍ଟେ ! ଏତିକି ବେଳକୁ ଆସିବାକୁ ଥିଲ ?

ନିଶି ।। କାଲି ଆସିପାରି ନଥିଲି ତ ! ଭବିଲି ଆଜି ସକାଳୁ !

ରଞ୍ଜା ।। ଏଇନା ମୁଁ ପାଠ ପଢ଼ିବି ? ମୁଁ ପର ପିକ୍‌ନିକ୍ ଯାଉଛି ! ମୋର ଟାଇମ୍ ହୋଇଗଲାଣି !

[ ରଞ୍ଜା ମଞ୍ଚର ପଛପଟ ଗେଟ୍ ଅର୍ଥାତ୍ ସାମନା ପଟ ଦେଇ ଗ୍ଲଲିଗଲା । ପୁଣି ପଛରୁ ଫେରି ମା'କୁ ]

ମା' ! ମୁଁ କାଲି ଖାତାରେ ପ୍ରେସି ଆଉ ଏସେ ଲେଖି ଦେଇଚି । ସାର୍‌ଙ୍କୁ କରେକ୍‌ସନ୍ କରେଇ ନବୁ ! ମୁଁ ଗ୍ଲଲିଲି !

[ ମନିକା ଓ ଗୋପାଳ ଆଗେଇ ଗଲେ । ଡ଼ାୟାସ ଉପରେ ନିଶିକାନ୍ତ ]

ମନିକା ।। ହଉ ଯା' ! ଜଲ୍‌ଦି ଆସିବୁ । ଅସୁବିଧା ହେଲେ ପାଖରୁ କୋଉଠୁ ଫୋନ କରିଦବୁ ।

ରଞ୍ଜା ।। (ଦୂରରୁ) ହଉ ମା' !

ମନିକା ।। ଗୋପାଳ, ତୁ' ଯାଇ ଚାଇ ପାଇଁ କିଛି ସ୍ନେକଡ଼ ନେଇ ଆସିବୁ ଯା' !

ଗୋପାଳ ।। ଯାଉଛି ମା' ! (ଗୋପାଳ ଗ୍ଲଲିଗଲା)

[ ମନିକା ଫେରି ପୁଣି ଭେଟିଲେ ନିଶିକାନ୍ତ ବାବୁଙ୍କୁ ଡ଼ାୟାସ ଉପରେ ]

ମନିକା ।। ବସ ମାଷ୍ଟେ ! ଗଜା ତ ପିକ୍‌ନିକ୍ ଗ୍ଲଲିଗଲା ! ତା'ର ଖାତାଟା ବାହାର କରୁଚି ।

[ ନିଶିକାନ୍ତ ଆସି ଡ଼ାୟାସ ତଳେ ପଡ଼ିଥିବା ସୋଫା ଉପରେ ବସିଲେ । ମନିକା ଖାତା ଖୋଜି ଆଣି ଦେଲେ । ପଗ୍ଭରିଲେ ]

ମନିକା ।। ଆଉ ଆପଣଂକ ଯୋଗ୍ୟ ପୁତ୍ର ସୁରେନ୍ଦ୍ର ବାବୁଙ୍କ ଖବର କ'ଣ ?

ନିଶି ।। ତାକୁ କେତେ ଆଉ ବୁଝେଇବି ମାଡ଼ାମ୍ ? ଭବିଥିଲି B.A. (Hons.) ପାଶ୍ କଲ-ପୁଅଟା କିଛି ଗୋଟାଏ କରିବ—ଶେଷକୁ ସୂତାକଳରେ ଗ୍ଭକିରି କରି ଟ୍ରେଡ଼୍ ୟୁନିଅନ୍ କରୁଚି ।

ମନିକା ।। ନାଇଁ ଟ୍ରେଡ଼୍ ୟୁନିୟନ୍ କରୁ—ଆମର ସେଥିରେ କିଛି ଯାଏ ଆସେ ନାଇଁ-କିଂତୁ ମି. ଦାସ୍‌ବର୍ମାଙ୍କୁ କଲର୍ ଧରି ସିଏ ଯୋଉ ଅପମାନ ଦେଇଛି—ସେଇଥି ପାଇଁ ଆମେ ବହୁତ ଦୁଃଖିତ । କାହିଁକି ଜାଣନ୍ତି ? ବହୁତ ଆଗରୁ, ନୟାଗଡ଼ କଲେଜରେ ଆପଣ ଥିଲା ବେଳେ, ଇଏ ସେଇଠି ଯୋଉ ଏ.ଡ଼ି.ଏମ୍. ଥିଲେ—ସେଇ ଦିନଠୁ ଆମ ପରିବାର ସହିତ ଆପଣଙ୍କର ସମ୍ପର୍କ.........ନହେଲେ ସୁରକୁ ସିଏ ସସ୍‌ପେଣ୍ଡ୍ ନକରି ଡ଼ିସ୍‌ମିସ୍ କରିଦେଇଥାନ୍ତେ ।

ନିଶି ।। କ'ଣ କରିବି ମାଡ଼ାମ୍ । ସେ ଅଯୋଗ୍ୟଟା ପାଇଁ ମୁଁ ବହୁତ ଯାଗାରେ ଅପମାନ ପାଇଲିଣି ହେଲେ ସିଏ କ'ଣ ବୁଝୁଚି ?

ମନିକା ।। ବୁଝୁନି ? ତା'ହେଲେ ମନେ ରଖନ୍ତୁ...ଆଉ ଗୋଟାଏ ମାସ ସମୟ ଦଉଚି...ଯଦି ଏଇ ମାସେ ଭିତରେ ଆପଣ ତାକୁ ବୁଝେଇ ପାରୁନାହାନ୍ତି ତା' ହେଲେ ଏ ଘରେ ଆପଣଙ୍କର ଟିଉସନ୍‌ଟା ବନ୍ଦ ହେଲା ବୋଲି ଜାଣନ୍ତୁ...

ନିଶି ।। ମାଡ଼ାମ୍ ! ସୁର ପାଇଁ ଆପଣ ଅଯଥାରେ ମୋ' ଉପରେ ରଗୁଛଂତି... କୁହନ୍ତୁ ଆପଣଙ୍କ ଘର ପାଇଁ ମୁଁ ଆଉ କ'ଣ କରିପାରେ ? କହିବେ ଯଦି ଗତଥର ପରି ଏଥର ବି କଣ୍ଟ୍ରୋଲ୍ ଦୋକାନରୁ ଆପଣଙ୍କର ରସନ୍‌ଟା ଆଣିଦେବି...କିଂତୁ ଘରର ଅବସ୍ଥା ଯାହା...ମତେ ଏ ଟ୍ୟୁସନଟା ନଦେଲେ ଶହେଟଂକା ଘର ବଜେଟ୍‌ରୁ ସଟ୍ ପଡ଼ିଯିବ..... ଆଉ ମୋର ପିଲାଛୁଆ ଭୋକରେ ମରିବେ !

ମନିକା ।। ମରନ୍ତୁ.....ସେଥିରେ ଆମର କ'ଣ ଯାଏ ଆସେ ? କ'ଣ ବୋଲି ଭବିଚି ସୁର ? ଗ୍ଭର ଗୋଟାଏ ଅଧ୍ୟାପକର ପୁଅ-.....ଗୋଟାଏ ସିନିଅର୍ ଆଇ.ଏ.ଏସ୍. ଅଫିସରର କଲର ଧରି ପକେଇବ ? ଗୋଟେ ମାନ

ସମ୍ମାନ ଜ୍ଞାନ ନାହିଁ ତା'ର ? ମୋର ତ ଇଛା ହଉଚି·····ଶହୀଦ୍ ଲକ୍ଷ୍ମଣ କଲେଜରୁ ଆପଣଙ୍କ ଚାକିରିଟା ଉଠେଇ ଦିଅନ୍ତି·····

ନିଶି ।। ମାଡ଼ାମ୍ ! ଆପଣଙ୍କ ଗୋଡ଼ ତଳେ ପଡ଼ୁଚି···ମୋ' ଉପରେ ଏ ଅତ୍ୟାଚାର କରନ୍ତୁ ନାହିଁ । ଘର ମୋର ବୁଡ଼ିଯିବ ମାଡ଼ାମ୍ !

ମନିକା ।। ହଉ । ବୁଝିବା ସେ କଥା ! ଆଜିତ ଆପଣଙ୍କର କାମ ନାହିଁ·····ଗରାର ଏ ଖାତା ଗୁଡ଼ାକ ଘରକୁ ନେଇ କରେକ୍‌ସନ୍ କରିଦେବେ, ଆଉ ଗୋଟାଏ କାମ କରିଦେବେ ?

ନିଶି ।। କହୁନାହାନ୍ତି ମାକିମ୍ ?

ମନିକା ।। କଥାହେଲା ଆମ କୁକୁରଟାର ଦେହ ଖରାପ···–ତାକୁଟିକିଏ ନେଇ ପଶୁ ଡ଼ାକ୍ତରଖାନାରେ ଦେଖେଇ ଆଣନ୍ତେ ନାହିଁ ?

ନିଶି ।। ଓ·····ସିଓର୍ ! ଇଏ ଗୋଟେ କଥା ମାଡ଼ାମ୍ !

ମନିକା ।। ତା' ହେଲେ ଆଣୁଚି ତାକୁ·····

[ ନିଶିକାନ୍ତ ମୁଣ୍ଡ ହଲାଇ ହଁ ମାରିଲେ ଏବଂ ମନିକା ଭିତରକୁ ଗଲେ । କିନ୍ତୁ ଆବହ ସଙ୍ଗୀତ ଗମ୍ଭୀର ହୋଇ ଉଠିଲା ଏବଂ ତାରି ଭିତରୁ ଶୁଭିଲା ଭୈରବୀ ରାଗରେ ଏକ କର୍କଶ ଆଳାପ, କ୍ରମଶଃ କରୁଣ ହୋଇ ଉଠିଲା ଆଳାପଟି, ଆଲୋକ ଆସି କେନ୍ଦ୍ରୀଭୂତ ହେଲା ନିଶିକାନ୍ତଙ୍କ ମୁହଁ ଉପରେ ସେ ଡ଼ାୟାସ ତଳେ ନିର୍ଜୀବ ଭଳି ଠିଆ ହୋଇଥାନ୍ତି । ପୃଷ୍ଠପଟରୁ ଶୁଭିଲା ତାଂକର ଅନ୍ତଃସ୍ୱର । ଭୈରବୀ ରାଗର ଆଳାପ କ୍ଷୀଣ ଭାବରେ ଶୁଭୁଥାଏ, ତାରି ଉପରେ ସମନ୍ୱିତ ହୋଇ ଶୁଭିଲା ନିଶିକାନ୍ତଙ୍କର ଅନ୍ତଃସ୍ୱର····· ]

ନିଶିକାନ୍ତଙ୍କ ସ୍ୱର ।। ବାଃ, ନିଶିକାନ୍ତ ଚୌଧୁରୀ ! ତମେ ଏ ଯାଏଁ ଆହୁରି ବଂଚିଛ ? ଅନେକ ଦିନ ତଳେ···ଯେତେବେଳେ ଓଡ଼ିଶାରେ ଇଂରାଜୀ ଏମ୍.ଏ. ଖୁବ୍ ବେଶୀ ନଥିଲେ—ତମେ ସେତିକି ବେଳେ ତୃତୀୟ ଶ୍ରେଣୀ ପାଇ ଅଧ୍ୟାପକ ଚାକିରି କରିଥିଲ । ସେତିକିବେଳେ ତମେ ଓ ଏ.ଏସ. ମଧ୍ୟ ପାଇଥିଲ ନିଶିକାନ୍ତ···କିଂତୁ ସାହିତ୍ୟ ପ୍ରତି ତମର ଆଗ୍ରହ ଥିଲା—ଆଉ କଳାଟଙ୍କାରେ ତମର ଲୋଭନଥିଲା ବୋଲି ଅଧ୍ୟାପକ ଚାକିରିରେ ରହିଗଲ ଜୀବନସାରା··· ତମେ ଖଣ୍ଡେ ଘର କରି ପାରିନାହଁ ଏଯାଏଁ—ଆଉ ତମରି ସାଂଗ ମାନେ–···ଯୋଉମାନେ ଓ.ଏ.ଏସ୍.ରେ ବିଡ଼ିଓ ହେଇ ଚାକିରି କରିଥିଲେ ଆଜି ସେମାନଙ୍କର ଦୁଇ ଦୁଇଟା ଘର···ଆଉ ପିଲାମାନଙ୍କର ଇଣ୍ଡଷ୍ଟ୍ରୀ ଅଛି··· ଆଉ ତମେ କ'ଣ କରିଚ ଆଦର୍ଶବାଦୀ ? ଦଶଟା ପ୍ରବଂଧ ଆଉ ଗୋଟାଏ G.K. ବହି ଘୋଷି ଯୋଉମାନେ ଆଜି ଅଫିସର, ତାଂକ କୁକୁରର

ସେବା କରିବା ପାଇଁ ତମକୁ ମାସକୁ ଶହେ ଟଙ୍କା ମିଳେ । ତଥାପି ତମେ ବଞ୍ଚିଛ ନିଶିକାନ୍ତ ? ଆତ୍ମହତ୍ୟା କରିବା ପାଇଁ ହୁଏତ ସାହସ ନାହିଁ ତମର ! ସେୟା ନା' ?

[ ଶେଷ ବାକ୍ୟଟି ଶୁଭିଲା ବେଳେ ସେଇଠି ଆସି ଠିଆହେଲା ରୁବି । ସଞ୍ଜୟ ଦାସବର୍ମାଙ୍କ ବଡ଼ ଝିଅ । ବୟସ ୨୦ ଉପରେ । ]

ରୁବି ।। ସାର୍ ନମସ୍କାର !

ନିଶି ।। ନମସ୍କାର ! କିଏ ତମେ ମା' ?

ରୁବି ।। ଆପଣଙ୍କ ରୁ' !

ନିଶି ।। ମୁଁ ତମକୁ ଚିହ୍ନି ପାରିଲିନି ମା' ! ଆଗରୁ ..ଆଗରୁ କେବେ ଏ ଘରେ ଆପଣଙ୍କୁ ଦେଖିଲା ପରି ତ ମନେ ପଡୁନି !

ରୁବି ।। ମତେ ଆପଣ ଡାକି ଲଜ୍ଜା ଦଉଛନ୍ତି ସାର୍ ! ମୁଁ ରୁବି...ଆମେ ନୟାଗଡ଼ରେ ଥିଲା ବେଳେ ମତେ ଆପଣ ଆସି ଇଂରେଜୀ ପଢ଼ଉଥିଲେ... ସେଇଠୁ ମୁଁ ଆପଣଙ୍କୁ ଚିହ୍ନିଛି ସାର୍...ଏବେ ପୁନାରେ ପଢୁଛି...MBA କରୁଚି ସାର୍...

ନିଶି ।। ଆରେ ରୁବି... ! ଆରେ ମା'...ଚିହ୍ନିଲି ଚିହ୍ନିଲି...ବୟସ ବଢ଼ିଲାଣି...ଆଉ ଏତେ ଦିନର କଥା ମନେପଡୁନି...

ରୁବି ।। ହେଲେ ମୁଁ ଆପଣଙ୍କ କଥା ଭୁଲି ପାରିବିନି ସାର୍ . ଆପଣଙ୍କ ଲାଗି ମୋର ଇଂରେଜୀ ଜ୍ଞାନ ବଢ଼ିଛି . ଆଉ...ଆଜି ଯଦି ଜୀବନରେ ମୁଁ କିଛି ହେଇ ପାରିଥାଏ...ତା' ହେଲେ ସେଇଟା ଆପଣଙ୍କର ଅବଦାନ !

[ ରୁବି ନିଶିକାନ୍ତଙ୍କର ପାଦ ଛୁଇଁଲା । ନିଶିକାନ୍ତ ରୁବିକୁ କୁଣ୍ଢେଇ ପକେଇଲେ ]

ନିଶି ।। ତୁ' ସତରେ ବହୁତ ବଡ଼ ହୋଇ ଯାଇଛୁ ମା' ! ସେଥିପାଇଁ ତତେ ମୁଁ ଚିହ୍ନି ପାରୁନି ।

ରୁବି ।। ଘରେ ବି କେହି ଆପଣଙ୍କୁ ଚିହ୍ନି ପାରୁନାହାନ୍ତି । ତେଣୁ ମତେ ଭାରି ଖରାପ ଲାଗୁଚି ସାର୍ ! ଆପଣଙ୍କ ହାତରେ ଏମାନେ କଣ୍ଟ୍ରୋଲ୍ ଦୋକାନରୁ ଚିନି ଗହମ ଅଣଉଛନ୍ତି ଶୁଣି ଭାରି ଖରାପ ଲାଗିଲା । ସେଥିପାଇଁ ମୁଁ କ୍ଷମା ମାଗୁଚି ସାର୍ !

[ ରୁବି ଚଟାଣ ଉପରେ ବସି ନିଶିକାନ୍ତଙ୍କର ପାଦ ଛୁଇଁଲା ]

ନିଶି ।। ଆରେ ମା' ! ତୁ' ତଳେ କାହିଁକି ବସିଲୁ ? ମା' ଦେଖିଲେ ମୋର ରୁ କିଣା ଯିବ !

ରୁବି ॥ ସାର୍ କାଲିଠୁ ଆପଣ ଘରେ ଗ୍ଲ' ପିଇ ଦେଇ ଆସିବେ—ଏଇଠି ଜମାରୁ ପିଇବେ ନାହିଁ ।

ନିଶି ॥ କାହିଁକି ମା' ?

ରୁବି ॥ ଆପଣ ଘରୁ ପିଇ ଦେଇ ଆସିବେ ! ଏଇଠି କାହିଁକି ପିଇବେ ଯେ ?

ନିଶି ॥ ସତ କହିବାକୁ ଗଲେ ମା'— ଏତେ ବଡ଼ ଘର ଚଳେଇବା ପାଇଁ ଘରେ ମୋର ପଇସା ଅଣ୍ଟୁନି...ଦୁଇଖଣ୍ଡରୁ ବେଶୀ ବହି ମଧ୍ୟ କିଣିପାରୁନି ମାସରେ......ତେଣୁ ଅମୁଲ ପାଇଁ ପଇସା ପାଉନିରେ ମା' !

ରୁବି ॥ ମତେ କିନ୍ତୁ ଭଣ୍ଡା ଖରାପ ଲାଗୁଚି ସାର୍ ! ଆମ ଘରେ ସମସ୍ତେ ଆପଣଙ୍କୁ ମିସ୍‌ବିହେଭ୍ କରୁଛନ୍ତି......ଏଗୁଡ଼ା ମୁଁ ସହିପାରୁନି ! ପିଲାଦିନେ ମତେ ଆପଣ କୋଳରେ ବସେଇ ଇଂରେଜୀ ଅକ୍ଷର ଶିଖାଇଥିଲେ... ସେ ଦିନଗୁଡ଼ାକ ମୋର ଆଜି ବି ମନେ ଅଛି ସାର୍ ଆପଣଙ୍କୁ ଦେଖିଲେ ମୋର ମନେ ପଡ଼ିଯାଏ—ମୁଁ ଆପଣଙ୍କ ହାତଗଢ଼ା ପିତୁଳାଟିଏ ।

ନିଶି ॥ ମା'ରେ ! ରୁବି ! ମତେ ଲାଗୁଚି...ଆଜି ବି ତୁ ସେଇ ଗ୍ରେଟ ଝୁଆଟିଏ ହେଇ ରହିଛୁ...ମନଟା ତୋ'ର ଏ ପର୍ଯ୍ୟନ୍ତ ସଭ୍ୟତା ଆଉ ବିଜ୍ଞାନର ଡ଼ିସ୍କୋ ନାଚ ଦ୍ୱାରା ଆକ୍ରାନ୍ତ ହୋଇନାହିଁ ।

ରୁବି ॥ ସାର୍, ସୁର ଭାଇଙ୍କ ଖବର କ'ଣ ?

ନିଶି ॥ ସୁରକୁ ମୁଁ ଏ ପର୍ଯ୍ୟନ୍ତ ମଣିଷ କରି ପାରିଲି ନାଇଁରେ ମା' ! ମତେ ଲାଗୁଚି ସିଏ ନଷ୍ଟ ହେଇଗଲା !

ରୁବି ॥ ସୁରଭାଇ ବଢ଼ିଆ ଚିତ୍ର ଆଙ୍କୁଥିଲେ......ଖୁବ୍ ଭଲ ଓଡ଼ିଆ ଗୀତ ଗାଉଥିଲେ ...ଅକ୍ଷୟ ମହାନ୍ତି ଆଉ ପ୍ରଫୁଲ୍ଲ କରଙ୍କର ଗୀତ ଅପେକ୍ଷା ପ୍ରଣବ ପଟ୍ଟନାୟକଙ୍କ ଗୀତ ଗୁଡ଼ାକ ଖୁବ୍ ବଢ଼ିଆ ଗାଉଥିଲେ ସିଏ । କିନ୍ତୁ ଆପଣ କହୁଛନ୍ତି ସିଏ ମଣିଷ ହେଇ ପାରିଲେ ନାଇଁ ବୋଲି !

ନିଶି ॥ କେମିତି ଆଉ ମଣିଷ ହେବ ? ଆଜିକାଲି ତ ପଇସା ଥିଲେ ଲୋକେ ମଣିଷ ରୂପେ ଗଣା ହଉଛନ୍ତି । ସମସ୍ତେ କହୁଛନ୍ତି ଡ଼ାକ୍ତର ହେଲେ ମଣିଷ, ନହେଲେ ଇଂଜିନିଅର ହେଲେ ମଣିଷ, ଯଦି ଡ଼ାକ୍ତର ଇଂଜିନିଅର ହେଇ ନ ପାରୁଚ...ଗୋଟେ ଆଇ.ଏ.ଏସ୍ ହୁଅ—ଓ. ଏ. ଏସ୍ ହୁଅ...ତହସିଲଦାର, ବିଡ଼ିଓ ନହେଲେ ପୋଲିସ ଅଫିସର...ସୁରଟା ଆମର କିଛି ହେଇ ପାରିଲା ନାହିଁ । ହେଇ ହେଇ ବି.ଏ. ପଢ଼ିଲା । ଆଉ ଚାକିରି ନ ପାଇ ଶେଷକୁ ଆଇଟିଆଇ କଲା...ତେଣୁ ତୋ' ବାପା ଯୋଉ ସୂତା କଳର ଅଫିସର...ସେଇଠି ସିଏ ଗୋଟେ ମିସ୍ତ୍ରୀ...ସେଥିରେ ପୁଣି ୟୁନିଅନ ନେତା ଯେ, ଚାକିରିରୁ ସସ୍‌ପେଣ୍ଡ ହେଇ ନେତାଗିରି କରୁଛି ।

ଛବି ।। ତା'ମାନେ ସୁରଭଇ ଗୋଟାଏ ସାଂଘାତିକ ସାମାଜିକ ବିପ୍ଳବ ପାଇଁ ପୃଥିବୀକୁ ତିଆରି କରୁଚି...ଆପଣ କେମିତି ଗୋଟିଏ ବିପ୍ଳବକୁ ସ୍ୱାଗତ କରୁନାହାନ୍ତି ସାର୍ ?

ନିଶି ।। କେମିତି ସ୍ୱାଗତ କରିବି ମା' ! ଏଇ କିଛି ସମୟ ଆଗରୁ ତ ମା' ତୋ'ର କହିଦେଇ ଗଲେ ଆଉ ଗୋଟାଏ ମାସ...ଆଉ ଗୋଟାଏ ମାସ ଭିତରେ ସିଏ ଯଦି ସୁତାକଳର ଧର୍ମଘଟ ବନ୍ଦ ନକରେ ତା'ହେଲେ ଏ ଘରେ ମୋର ଟ୍ୟୁସନ ବନ୍ଦ...ହୁଏତ କଲେଜରୁ ମୋର ଚାକିରୀଟା ବି ଚାଲିଯାଇ ପାରେ...କାରଣ ମୁଁ ଯୋଉ କଲେଜର ଶିକ୍ଷକ...ତା'ର ପରିଚାଳନା ଦାୟିତ୍ୱରେ ଅଛନ୍ତି ତୋ'ର ବାପା... !

ଛବି ।। ସେଇ ଭୟରେ ଆପଣ ସୁଟଭଇକୁ··· ଆଉ ତା'ର ବିପ୍ଳବର ସ୍ୱରଟାକୁ ଶ୍ୱାସରୁଦ୍ଧ କରିଦେବେ ?

ନିଶି ।। ବୟସ ବଢ଼ିଲା ପରେ ଜଣାପଡ଼ୁଚି ମା'...ବିପ୍ଳବ ଗୋଟାଏ ପଟେ ଆଉ ଜୀବନ ଚାଲିଛି ଆଉ ଗୋଟାଏ ପଟେ ! ସୁଚ ତ ତା'ର ସ୍ଲୋଗାନ ଦେଇ ଶୋଭାଯାତ୍ରା କରୁଚି...ଭଲ ଆଉ ଖରାପର ନିଜସ୍ୱ ବ୍ୟାଖ୍ୟା କରୁଚି... ହେଲେ ଏପଟେ—ତୋ' ମା' ଯଦି ଟ୍ୟୁସନଟା ବନ୍ଦ କରିଦିଅନ୍ତି ଆଉ ବାପା ଯଦି ଚାକିରୀଟା ନେଇଯାଆନ୍ତି···ତା'ହେଲେ ଛୋଟ ଛୋଟ ଛୁଆ-ଗୁଡ଼ାକ ମୋର ନଷ୍ଟ ହୋଇଯିବେ ଛବି···ଘରଟା ମୋର ନଷ୍ଟ ହେଇଯିବ··· ନିଶିକାନ୍ତ ସାର୍ ତୋ'ର ହାରିଯିବ ବାପା ହିସାବରେ...ସବୁ ସାହିତ୍ୟ... ସବୁ ମୂଲ୍ୟବୋଧ . ବିପ୍ଳବର ସ୍ଲୋଗାନ ସବୁ ଗୋଟାଏ ପଟେ···ଏବଂ ଆଉ ଗୋଟାଏ ପଟେ ଏଇ ଅଲେଡ଼ା ଅଧ୍ୟାପକର ଜୀବନଟାରେ ମା' ! କ'ଣ ମୁଁ କରିବି···କିଛି ଜାଣିପାରୁନି !

[ ନିଶିକାନ୍ତ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ଏ ସଲାପ କହିଲା ବେଳକୁ ଛବି ଚାଲି ଆସିଥିଲା ଦୂରକୁ । ମଞ୍ଚ ସାମ୍ନାକୁ ]

ଛବି ।। (ମଞ୍ଚ ସାମ୍ନାରେ ଠିଆ ହୋଇ, ମନକୁ ମନ) ମୁଁ ମଧ୍ୟ ଏ ଅବସ୍ଥାରେ କ'ଣ କରିବି ଜାଣିପାରୁନି ସାର୍ ! ମନ କହୁଚି ଗୋଟାଏ କଥା···ହେଲେ ପରିସ୍ଥିତି ଅଲଗା ପ୍ରକାରର···(ହେଠାତ୍ ବୁଲି ନିଶିକାନ୍ତଙ୍କ ପାଖକୁ ଯାଇ) ସାର୍ ଗୋଟାଏ କଥା କହିବି . ଖରାପ ଭାବିବେ ନାହିଁ ?

ନିଶି ।। କହ ମା' !

[ ଆବହ ସଙ୍ଗୀତ କରୁଣ ଓ ସାମାନ୍ୟ ତୀବ୍ର,
ତା' ଭିତରେ ରୁବି ଆସ୍ତେ ଆସ୍ତେ ନଇଁ ପାଦ
ଛୁଇଁଲା ନିଶିକାନ୍ତଙ୍କର ଏବଂ ସେଇଠି ବସି ଆସ୍ତେ
ଆସ୍ତେ କହିଲା ]

ରୁବି ।। ସାର୍ ! ଯଦି ମା' ଆପଣଙ୍କର ଟ୍ୟୁସନ୍ ବନ୍ଦ କରିଦିଅନ୍ତି ଆଉ ବାପା ଆପଣଙ୍କର ଚାକିରି ନେଇଯାଆନ୍ତି...ଆପଣ ଆଦୌ ଡରିବେ ନାଇଁ ସାର୍ ! ମୁଁ ଆପଣଙ୍କ ଘରକୁ ଯାଇ ମାସକୁ ମାସ ପାଞ୍ଚଶ' ଟଙ୍କା ଦେଇ ଆସିବି ।

ନିଶିକାନ୍ତ ।। (ତାକୁ ଉଠାଇ ଆଣି, ଧରି) ପାଞ୍ଚଶ' ଟଙ୍କା ? ତୁ' କୋଉଠୁ ଆଣିବୁ ?

ରୁବି ।। ବାପାଙ୍କର ବହୁତ ଟଙ୍କା ସାର୍ ! ହଜାର ହଜାର ଟଙ୍କା ଲାଞ୍ଚ ପାଆନ୍ତି । ଆଉ ମା' ସେଗୁଡ଼ାକୁ ସବୁ ବଦ୍ ଖର୍ଚ୍ଚ କରନ୍ତି । ମତେ ଏପ୍ରକାର ଜୀବନଯାତ୍ରା ପ୍ରଣାଳୀ ଦେଖିଲେ ଘୃଣା ଲାଗେ ସାର୍...ତଥାପି କାହାକୁ କିଛି ନକହି ମୁଁ ସହିଯାଏ ! ମା'ଙ୍କ ବାକ୍ସରେ ହଜାର ହଜାର ଟଙ୍କା ଭର୍ତ୍ତି ହୋଇ ରହିଥିବ...ଆଉ ଆପଣ ଏତେ ଆଦର୍ଶ ଆଉ ମହାନ୍ ହୋଇ ଦାରିଦ୍ର୍ୟ ଭିତରେ ସଢ଼ୁଥିବେ ? ପାଞ୍ଚଶ' ଟଙ୍କାରେ ହେଇଯିବନା ସାର୍ !

ନିଶିକାନ୍ତ ।। ଆମମାନଙ୍କର ଦରମା ବହୁତ କମ୍‌ରେ ମା' ! ଏତେଦିନ ଚାକିରି ପରେ ମୁଁ ପାଉଛି ତିନିଶ' ପଚାଶ ଟଙ୍କା—ପାଞ୍ଚଶ' ଟଙ୍କା ପାଇଲେ ମୁଁ ବେଶ୍ ଆରାମରେ ଚଳିଯାଇପାରିବି । କିନ୍ତୁ...ତୁ—

ରୁବି ।। ମୋ' କଥାରେ ବିଶ୍ୱାସ କରନ୍ତୁ ସାର୍ ! ଟଙ୍କା ଦେଇ ଆସିବି କହିଚି ମାନେ...ମୁଁ ନିଶ୍ଚୟ ଦେଇ ଆସିବି...କିନ୍ତୁ ଟ୍ୟୁସନ ପଢ଼େଇବା ପାଇଁ ଏ ନର୍କକୁ ଆପଣ କମାରୁ ଆସନ୍ତୁ ନାହିଁ...ଏଇଠି ଆପଣଙ୍କର ଅପମାନ ହଉଚି ସାର୍...ଆଉ...ଯୋଉ ରୁବି ଆପଣଙ୍କର ପାଦଧୂଳି ନେଇ ମୁଣ୍ଡରେ ମାରେ...ସିଏ ଏ ଅପମାନ ଆଦୌ ସହିପାରିବ ନାହିଁ ।

[ ଆବହ ସଙ୍ଗୀତ ଦ୍ରୁତ । ରୁବି ଦୌଡ଼ି
ଚାଲିଗଲା ]

ନିଶିକାନ୍ତ ।। (ମଞ୍ଚ ଉପରେ ଏକା) ହେ ପ୍ରଭୁ ! ଦେଶ ସ୍ୱାଧୀନ ହେବା ପରେ ପରେ ଆଦର୍ଶର ଯେଉଁ ଅଧଃପତନ ହୋଇଚାଲିଛି, ତା' ଭିତରେ ମୁଁ ଶ୍ୱାସରୁଦ୍ଧ ହୋଇପଡ଼ିଛି ଅନେକ ଥର...ଆଉ ଅନେକଥର ଭାବିଚି, ଜଣେ ଶିକ୍ଷକ ହେଇ ଦୁର୍ନୀତି ପରାୟଣ ଅଫିସର ମାନଙ୍କଠୁ ଅପମାନ ପାଇବା ଅପେକ୍ଷା ଆତ୍ମହତ୍ୟା କରିଦେବା ଉଚିତ...କିନ୍ତୁ...ହେ ପ୍ରଭୁ ! ତମର ଏଇ ହିଂସ୍ର

ପୃଥିବୀରେ ଏବେ ବି ପାରିଜାତ ଫୁଟେ...ଏବେ ବି ଆଦର୍ଶର ଧୂପକାଠି ଜଳେ...ସେଥିପାଇଁ ପୁଣିଥରେ ବଞ୍ଚିବା ପାଇଁ ମୋର ଇଚ୍ଛାହୁଏ... ପୁଣିଥରେ ଇଚ୍ଛାହୁଏ, ମୂଳ୍ୟବୋଧର ଏଇ ଧ୍ରୁବତାରମାନଙ୍କୁ ଗୁହିଁ ଗୁହିଁ ଆଦର୍ଶର ଦୁର୍ଗମଗିରି ମାନଙ୍କୁ ଚଢ଼ିବା ପାଇଁ...

[ ଏହି ଫଳାପଟି କହିବା ସମୟରେ ନିଶିକାନ୍ତଙ୍କ ମୁହଁ ଉପରେ ପଡ଼ିଥିବା ସ୍ପଟ୍‌ଟି କ୍ରମଶଃ କ୍ଷୀଣ ହୋଇ ସମ୍ପୂର୍ଣ୍ଣ ଅନ୍ଧାର ହୋଇଯାଏ ।
ପୁନର୍ବାର ଆଲୋକ ଆସେ ଉପର ମଞ୍ଚର ଅର୍ଥାତ୍ ଡ଼ାୟାସ୍‌ର ଡ଼ାହାଣ ପଟେ । ତାହା ନିଶିକାନ୍ତ ବାବୁଙ୍କର ଘର । ଆଲୋକ ଆସିଲ ବେଳକୁ ନିଶିକାନ୍ତ ବାବୁଙ୍କର ସ୍ତ୍ରୀ ଉମା, ତାଙ୍କ ସାନପୁଅ ବାବୁକୁ ମାରି ମାରି ମଞ୍ଚ ଉପରକୁ ଆସିଛନ୍ତି ]

ଉମା  ।। ବସ୍ ! ବସ୍ ଏଇଠି ବଦ୍‌ମାସ୍ । ଯେତେ ମନାକଲି ପିଜୁଳି ଗଛରେ ଚଢ଼ନା'—କାନରେ ପଶିଲ ନାହିଁ...ପାଠପଢ଼ା ବେଳକୁ ଯାଇ ପିଜୁଳି ଗଛରେ ଚଢ଼ିବ...

ବାବୁ  ।। ତା' ବୋଲି ତୁ' ମତେ ମାରିବୁ ?

ଉମା  ।। ମାରିବିନି ଆଉ କ'ଣ ପୂଜା କରିବି ?

ବାବୁ  ।। କାଇଁକି--ସକାଳୁ ଭେକ କଲେ ମୁଁ କ'ଣ ଖାଇବି ? ଘରେ ତ ଚୁଡ଼ା ମଧ ନାଇଁ...ଛତୁଆ ମଧ ନାଇଁ... !

ଉମା  ।। ମୁଁ କ'ଣ କରିବି ? ବାପାଙ୍କୁ କହୁନୁ ?

ବାବୁ  ।। ନହେଲେ ସୁଜି ଟିକିଏ ଘାଣ୍ଟିକି ଦଉନୁ ?

ଉମା  ।। ସୁଜି ? ସୁଜି କୋଉଠୁ ମିଳୁଚି ବଜାରରେ ? ସବୁତ ବ୍ଲାକ୍ ହଉଚି...ଚିନି ନାଇଁ... ସୁଜି ନାଇଁ... ଅରୁଆ ଗୁଉଳ ନାଇଁ... କିରୋସିନି ନାଇଁ...ଏମିତିକି ସାଇକଲ୍ ଟାୟାର ବି ମିଳୁନି ଖୋଲା ବଜାରରେ ଗ୍' ଟିକିଏ ନପିଇ ତୋ' ବାପା ଯାଇଛନ୍ତି ଟ୍ୟୁସନ କରିବାକୁ ଆଇ. ଏ. ଏସ୍. ଘରକୁ . ଆସିଲେ ପଗ୍ଚରିବୁ ।

[ ପ୍ରବେଶ କରିଚି ସୁର ]

ବାବୁ  ।। (କାନ୍ଦି କାନ୍ଦି) ମୁଁ ବାପାଙ୍କୁ କିଛି ପଗ୍ଚରିବିନି ଯା' ! ସ୍କୁଲରେ ସବୁ ପିଲାଙ୍କର ଟେରିଲିନ୍ ଡ୍ରେସ୍ ଅଛି, ମୋର ନାଇଁ । ସମସ୍ତେ ଟିଫିନ୍ ବାକ୍‌ସ ଙ୍କଲେଣି

ଆଜି କାଲି, ଆଳୁ ପରଟା, ବ୍ରେଡ୍ ଆଉ ଅଣ୍ଡା ଆମ୍ଲେଟ୍ ଖାଇଲେଣି… ଆଉ ମୁଁ ପେଟ ବିକଳରେ ଗୋଟେ ପିଜୁଳି ଖାଇଦେଲି ବୋଲି ମୋ' ଉପରେ ମାଡ଼ ?

ସ୍ବର ।। କ'ଣ ହେଇଚି ବୋଉ ? ବାବୁକୁ ମାରୁଚୁ କାହିଁକି ?

ଉମା ।। ପାଠ ନପଢ଼ି ପିଜୁଳି ଗଛରେ ଚଢ଼ିଥିଲା । ପଗ୍ଚରିବାରୁ କହୁଚି ଡକଖିଆ ଦେ' ! ମୁଁ ଏଇନା ଡକଖିଆ କୋଉଠୁ ଆଣିବି କହିଲୁ…ବାପାଙ୍କର ତ ଦରମା ଦେଖୁଚୁ…ସେଥିରେ ଆଉଟ୍ ଇନ୍କମ୍ କିଛି ନାହିଁ…ଖାଲି ବହି ପଢ଼ା ଚ୍ଲିଚି…ଏବେ ଜବରଦସ୍ତ କରିବାରୁ ସେ ଆଇ. ଏ. ଏସ୍. ଘରେ ଗୋଟେ ଟ୍ୟୁସନ କରୁଛନ୍ତି । ସେଥିରେ ପୁଣି ତାଙ୍କର ମନଦୁଃଖ… ସେମାନେ କୁଆଡ଼େ ବାପାଙ୍କୁ ତୋ'ର ଭଲ ବ୍ୟବହାର ଦେଖଉ ନାହାନ୍ତି ।

ସ୍ବର ।। ସେ ଶଳା ସଞ୍ଜୟ ଦାସବର୍ମା ଭଲ ବ୍ୟବହାର ଦେଖେଇବ ବୋଲି ବାବା ଆଶା କରୁଥିଲେ । ତା' ଓ୍ବାଇଫ୍‌ଟା ବି ବାଜେ ଲୋକ ! ସୂତାକଳର ସବୁ ପଇସା ମାରି ଘର କରିଛନ୍ତି । ଏବେ କଲେଜ ପାଇଁ ଯାହା ସରକାରି ଗ୍ରାଣ୍ଟ୍ ଆସୁଚି ତାକୁ ବି ଖୋଲ କରିବାକୁ ବସୁଚି ।

ଉମା ।। ସିଏ ବଡ଼ ଲୋକ…ତାଙ୍କ କଥାରେ ତୁ' କାହିଁକି ମୁଣ୍ଡ ଖେଳାଉଚୁ ? ସେଇଥି ପାଇଁ ତତେ ଚାକିରିରୁ ବାହାର କରିଦିଆ ହେଇଚି…

ସ୍ବର ।। ଚାକିରିରୁ ବାହାର କରିଦବ ? ଦେଖିବା କେମିତି ବାହାର କରିଦବ ? ସେଦିନ ତା'ର କଲର ଧରି ଟାଣିଥିଲି । ଯଦି ଚାକିରିରୁ ବାହାର କରିବାକୁ ଚେଷ୍ଟା କରିବ…ହଜାରେ ଶ୍ରମିକଙ୍କୁ ନେଇ ତା' ଘରେ ନିଆଁ ଲଗେଇ ଦେବି ବୋଉ.. ଭବେନା ମୁଁ ବାପାଙ୍କ ପରି ଗାନ୍ଧୀବାଦୀ ହେବି…ଗୋଟେ ଗାଲକୁ ଚାପୁଡ଼ାଏ ମାରିଲେ ଆଉ ଗୋଟେ ଗାଲ ଦେଖେଇଦେବି…ମୁଁ… ମୁଁ ହଉଚି ଭିଏତନାମ ଯୁଦ୍ଧ ସମୟର ଲୋକ…କଲେଜ ଆସିଲାବେଳକୁ ଚୀନ ଭରତ ଯୁଦ୍ଧ ଚ୍ଲିଛି । ସେ ଜବାହରଲାଲ ନେହୁରୁ ଯୋଉ "ହିନ୍ଦୀ-ଚୀନି ଭଇଭଇ" ହଉଥିଲା ପାଇଲା ଏକାଥରେ ତା'ର ଫଳ… ହେଲେ ଦି' ବର୍ଷ ତଳେ ଯୋଉ ପାକିସ୍ତାନ ଭରତ ଯୁଦ୍ଧ ହେଇଥିଲା ସେଇଟା ଅନେକ ଭଲ…ଦିନେ ଦେଖିବୁ ମୁଁ ମାଓ ସେତୁଂ ପରି ଆକ୍ରମଣ କରିବି ସେ ସୂତାକଳ ଉପରେ ଆଉ ତା'ପରେ ଶେଷକୁ ତା'ର ପାଞ୍ଚ ଏକର ଜମି ଉପରେ ତିଆରି ହେଇଥିବା ଦୁଇ ମହଲା କୋଠା ଉପରେ !

ଉମା ।। ତା'ପରେ ତତେ ସିଏ ଜେଲ୍ ପଠେଇଦବ…ପୋଲିସ୍‌କୁ କହି ବୋମା ପକେଇ ମାରି ପକେଇବ ! ତୁ' ଜମା ସେମିତି କରନାରେ ସ୍ବର… (କାନ୍ଦି ପକେଇଲେ) ମୋର ଭେଳା ବୁଡ଼ିଯିବ… !

ସୁର ।। ଭେକାବୁଡ଼ୁ ଆଉ ସେମିତି କାନ୍ଦୁଥା’ ! ଘରତ ବର୍ଷରେ ଯେତେ ବୋଉ ଆଉ ଭଉଣୀ ଅଛନ୍ତି—ସମସ୍ତେ କାନ୍ଦୁଥାନ୍ତୁ··· । କାରଣ ଦେବତାଙ୍କର ଏଇ ସୁନ୍ଦର ଦେଶରେ ମୁଁ ମଧ୍ୟ ମଜଦୁରମାନଙ୍କ ପାଇଁ ସଂଗ୍ରାମ କରି କାନ୍ଦୁଚି...ମା’ ! ଆଉ ବାପା...ସମାଜକୁ ଶିକ୍ଷାଦାନ କରିବାକୁ ଯାଇ ତାଙ୍କର ଆଦର୍ଶର ତ୍ରେଲମାଡ଼ ଖାଇ କାନ୍ଦୁଛନ୍ତି...ଆଉ ତୁ’···ତୁ’ ମଧ୍ୟ ଗୋଟାଏ ଅଧ୍ୟାପକ ଜୀବନର ଦାରିଦ୍ର୍ୟକୁ ନେଇ ଲୁହ ଗଡ଼େଇବା ପାଇଁ ବାଧ୍ୟ ।

ଉମା ।। ଜୀବନଯାକ ମୁଁ ଏମିତି କାନ୍ଦୁଥିବିରେ ବାପା ବାସନ୍ତୀ ବାହାହବ... ତୁ ଚାକିରି କରିବୁ...ଆଉ ବାବୁ ବଡ଼ ମଣିଷ ହେବ···ଏସବୁ ଦେଖିବା ଯାଏଁ ମତେ କାନ୍ଦିବାକୁ ପଡ଼ିବ ହିଁ ପଡ଼ିବ ।

ସୁର ।। ହଉ ତୁ କାନ୍ଦୁଥା·· ମୁଁ ବାବୁକୁ ନେଇ ଯାଉଛି...ଆ’ ବାବୁ ।

[ ସୁର ବାବୁକୁ ନେଇ ଚାରିପାଦ ଆଗେଇ ଯାଇ ରହିଲା ]

ଆରେ ତତେ କ’ଣ ଜର ହେଇଚି ? ବୋଉ ! ବାବୁକୁ ଜ୍ୱର ?

[ ଦୌଡ଼ିଯାଇ ଦେଖିଲେ ]

ଉମା ।। କାଇଁ !
ଆରେ ଏତେ ତାତି !

ବାବୁ ।। (କାନ୍ଦି) ଏଥିରେ ବୋଉ ମତେ ଦଶଚାପୁଡ଼ା ମାରିଲା ଭାଇ !

ସୁର ।। ଚାଲ, ଚାଲ...ବୋଉକଥା ପରେ ବୁଝିବା । ମୋ’ ସାଇକଲ୍‌ରେ ବସ, ପ୍ରଥମେ ହସ୍‌ପିଟାଲ୍ ଯିବା ।

[ ସୁର ପଛପଟ ପାହାଚ ଦେଇ ଚାଲିଗଲା ବାବୁକୁ ନେଇ । ମଞ୍ଚର ଆଲୋକ ଏକତ୍ରିତ ହେଲା ଉମାଙ୍କ ଉପରେ । ଉମାଙ୍କ ମୁହଁରେ ଅସହାୟତା, କଣ୍ଠରେ ଭଗ୍ନସ୍ୱର ।

ଉମା ।। ହେ ପ୍ରଭୁ ! କ୍ଷମାକର ମତେ ! ପେଟ ବିକଳରେ ଛୁଆଟା ମୋର ପିଜୁଳି ଦିଇଟା ଖାଉଥିଲା ବୋଲି ତାକୁ ମୁଁ ଦଶ ଚାପଡ଼ା ମାରିଛି...ତାକୁ ପୁଣି ଜ୍ୱର ! ମୁଁ ମା’ ହେଇ କେମିତି ବୁଝିପାରିଲିନି ପ୍ରଭୁ ! ଏବେ ଦ ଘରେ ଔଷଧ କିଣିବାକୁ କଣା ପଇସାଟିଏ ବି ନାହିଁ... ! କରିବି କ’ଣ ?

[ ଆଲୋକ କ୍ରମଶଃ ସ୍ତିମିତ ହୋଇ ଆସିଲା ଉମାଦେବୀଙ୍କ ମୁହଁ ଉପରେ । ଆବହ ସଙ୍ଗୀତ ଗମ୍ଭୀର ଓ କରୁଣ । ସତେ ଯେମିତି ଉମାଦେବୀ ଭଷାରେ ହୃଦୟର ଯେଉଁ ଆବେଗକୁ ପ୍ରକାଶ କରିପାରି ନାହାନ୍ତି, ତାକୁ ପ୍ରକାଶ କଲା ଆବହ ସଙ୍ଗୀତ । ଅନ୍ତତଃ ପକ୍ଷେ ସମୂହ ନାଷ୍ଟଙ୍କଂଠାରେ ହମିଂଟିଏ ଦେବା ଆବଶ୍ୟକ । ଏଇଠି ମଞ୍ଚ ଅନ୍ଧାର ହେଲାପରେ ମଞ୍ଚରେ ଆଲୋକ ଆସିଲା ସଞ୍ଜୟ ଦାସବର୍ମାଙ୍କ ଘରେ । ସେଇଠି କାବୁଷ୍ଠ ଅବସ୍ଥାରେ ଠିଆ ହୋଇଛନ୍ତି ନିଶିକାନ୍ତ ଏବଂ ଚିତ୍କାର କଲାପରି କହୁଛନ୍ତି ସଞ୍ଜୟ ଦାସବର୍ମା ]

ସଞ୍ଜୟ ॥ (ଚିତ୍କାର କରି) କ'ଣ କରିବ ତମର ଯୋଗ୍ୟ ପୁଅ ସୁରେନ୍ଦ୍ରକୁ ପଗ୍ରର ! ବୁଝିଲ ମାଷ୍ଟ୍ରେ ! ଖାଲି ତମ ପୁଅ ବୋଲି ମୁଁ ତାକୁ ଏ ପର୍ଯ୍ୟନ୍ତ ପୋଲିସ୍‌ରେ ଦେଇନି, ନହେଲେ ମୋ' ସାଙ୍ଗରେ ସିଏ ଯୋଉ ଅଭଦ୍ର ବ୍ୟବହାର କରିଛି, ମୁଁ ତାକୁ କୋଉଦିନଠୁ ଜେଲ୍‌ରେ ଠୁଙ୍କି ଦେଇ ସାରନ୍ତିଣି···ଆଉ ଆପଣଙ୍କୁ ଡ଼ିସ୍‌ମିସ୍ କରି ସାରନ୍ତିଣି ।

ନିଶି ॥ ମୁଁ ତାକୁ ବହୁତ ବୁଝେଇଛିଲିଣି ସାର୍ ! ହେଲେ ସିଏ କହୁଚି ଆପଣ ସୂତାକଳ ଆଉ କଲେଜରୁ ଲକ୍ଷ ଲକ୍ଷ ଟଙ୍କା ଆତ୍ମସାତ୍ କରିଛନ୍ତି ଏବଂ ସେ ଏଇ ଦୁର୍ନୀତିକୁ ବରଦାସ୍ତ କରିବ ନାହିଁ !

ସଞ୍ଜୟ ॥ Shut up ! ଅଦା ବେପାରୀ ତମେ ସବୁ ! ଜାହାଜ ମୂଲେଇବାକୁ ଆସିଚ ଏଇଠିକି ? ବୁଝିପାରୁଚ କାହା ଆଗରେ ଏକଥା ସବୁ କହୁଚ ନିଶିକାନ୍ତ ବାବୁ ? ତମେ ଜଣେ ଅଢ଼େଇଶ ଟଙ୍କାର କଲେଜ ମାଷ୍ଟର ଆଉ ମୁଁ ଅଶୋକ ସୂତାକଳର ମ୍ୟାନେଜିଂ ଡାଇରେକ୍ଟର ! ତମ ଶହୀଦ୍ ଲକ୍ଷ୍ମଣ କଲେଜଟା ବି ମୋ' ଦୟାରେ ଚାଲୁଚି ।

ନିଶି ॥ ଦେଖନ୍ତୁ...ମୁଁ ଆପଣଙ୍କର ଶକ୍ତି ସାମର୍ଥ୍ୟ ସମ୍ପର୍କରେ ଭାଷଣ ଶୁଣିବାକୁ ଏଇଠିକି ଆସିନଥିଲି । ଆପଣଙ୍କ ସ୍ତ୍ରୀ ଅନୁରୋଧ କରିଥିଲେ ପୁଅର ପାଠପଢ଼ା ଦେଖିବାକୁ...ସେଇଥିପାଇଁ ଆସିଥିଲି ସାର୍...ହେଲେ ଆପଣ ମୋ' ସାଙ୍ଗରେ ଯେମିତି କଥାବାର୍ତ୍ତା କରୁଛନ୍ତି ସେଇଟା ମୋ' ପାଇଁ ଅପମାନ ହଉଚି ।

ସଞ୍ଜୟ ॥ ମାନେ ?

ନିଶି ।। ମାନେ ଏଥରକୁ ମିଶେଇ ମତେ ଆପଣ ଆଉ ଆପଣଙ୍କ ସ୍ତ୍ରୀ ପନ୍ଦରଥର ଅପମାନ ଦେଇ ସାରିଲେଣି ସୁର ପାଇଁ । କାହିଁକି ? ଆପଣ କ'ଣ ଭବୁଛନ୍ତି ମୁଁ ଏ ପୃଥିବୀର ସବୁ ଦୁର୍ନୀତିକୁ କଣ୍ଟ୍ରୋଲ କରିବା ପାଇଁ ଜନ୍ମ ହେଇଚି... ? ଏ ସମାଜରେ ଯେତେସବୁ ଅଭଦ୍ର, ଅନୈତିକ କାରବାର ଚ୍ଲିଚି, ସେ ଗୁଡ଼ାକୁ ମୁଁ ସମାଧାନ କରିବି ? ତା'ହେଲେ ପ୍ରଥମେ କୁହନ୍ତୁ, ଆପଣ ଜନସାଧାରଣଙ୍କର ରକ୍ତ ଚିପୁଡ଼ା ପଇସା ଆତ୍ମସାତ୍ କରୁଛନ୍ତି କାହିଁକି ? ଯଦିବା ଲେଉ ସମ୍ଭାଳି ନପାରି ପଇସା ଗୁଡ଼ା ଖାଇ ଯାଉଛନ୍ତି, ତାକୁ ନେଇ ଏତେ ଗର୍ବ କରୁଛନ୍ତି କାହିଁକି ? କାହିଁକି ସେ ପଇସାର ଶକ୍ତି ପ୍ରୟୋଗ କରି ମୋ ଚ୍କିରି ନେବାପାଇଁ ଧମକ ଦଉଛନ୍ତି ? ଆପଣ ଏମିତି କିଏ କି ?

ସଞ୍ଜୟ ।। ଅଧ୍ୟାପକ ! ତମର ମନେ ରଖିବା ଉଚିତ ତମ ଚ୍କିରିଟା ମୋ' ହାତରେ ।

ନିଶି ।। ତମର ବି ମନେରଖିବା ଉଚିତ ମୋ'ଠୁ ପାଠପଢ଼ି ତମେ ଏ ଶକ୍ତି ପାଇଚ !

ସଞ୍ଜୟ ।। ତମଠୁ ପାଠପଢ଼ି ମୁଁ ମୂର୍ଖ ହେଇଯାଇଥିଲି । ଯାହା ହେଇଚି ନିଜ ବୁଦ୍ଧି ବଳରେ । ନିଜର ଅଧ୍ୟବସାୟ ଦ୍ୱାର--"କରିବି ନହେଲେ ମରିବି"—ଏମିତି ଗୋଟେ ଇଚ୍ଛାଶକ୍ତି ଦ୍ୱାର ! ଆଉ ମନେରଖ—ତମର କଲେଜ ପଢ଼ା ପାଠ ମତେ ବଡ଼ଲୋକ କରିବା ଦୂରେ ଥାଉ – ମତେ କାଣିଚ୍ଏ ପ୍ରେରଣା ମଧ୍ୟ ଦେଇନି ।

ନିଶି ।। ସତେନା ? ଦଶଟା ଇଂରେଜୀ ପ୍ରବନ୍ଧ ଆଉ ଗୋଟେ ମୋଟା G K. ବହି ଘୋଷି ତମେ ଆଇ. ଏ. ଏସ୍. ପାଇଥିଲ ସଞ୍ଜୟ ବାବୁ ! ଆଉ ମଶୋରୁ ଫେରିଲ ପରେ ଓଡ଼ିଶାର ସବୁ ମଣିଷ ତମକୁ ପୋକ ମାଛି ପରି ଦିଶିଲେ । ଖାଲି ତମକୁ ନୁହେ ତମ ସ୍ତ୍ରୀ ଆଉ ପିଲଙ୍କୁ ମଧ୍ୟ ସାଧାରଣ ଲୋକଗୁଡ଼ାକ ପୋକ ମାଛି ପରି ଦିଶିଲେ । ସେଇଥିପାଇଁ ଦେଶର ଶିକ୍ଷା ବ୍ୟବସ୍ଥାଟାକୁ ତମେ ସବୁ ଧ୍ୱଂସ କରି ଚ୍ଲିଛ ।

ସଞ୍ଜୟ ।। ଏଇଟା ତମର ମିଡ଼ିଲ୍ କ୍ଲାସ୍ କଂପଲେକ୍ସ୍...ଚୂଡ଼ା ଖାଇବା ଲୋକେ ନିଜର ଅପାରଗତାକୁ ଲୁଚେଇବା ପାଇଁ ସବୁବେଳେ ଚିକେନ୍ ଖାଉଥିବା ଲୋକଙ୍କୁ ଦୁର୍ନୀତିଗ୍ରସ୍ତ ବୋଲି କହି ଆସିଛନ୍ତି...ଏଇଟାକୁ ଆମେ ବସ୍ତି ଅଞ୍ଚଳର କୁକୁର ଭୁକିବା ସହ ସମାନ ବୋଲି କହୁଚୁ !

ନିଶି ।। ଆଉ ଆପଣମାନେ ଯୋଉମାନେ ଆମ ଖାଇବା ପତର ପାଖରେ ଶୁଙ୍ଘି ଶୁଙ୍ଘି ବୁଲନ୍ତି...ଆଉ ଖପ୍ କରି ମୁହଁ ମାରନ୍ତି... ? ଆପଣମାନେ କୁକୁର

ନୁହନ୍ତି... ? ଆଉ କ'ଣ ପଣ୍ଡିତ ? ସବୁ ବିଷୟରେ ଦି'ଧାଡ଼ି ଲେଖା ପଢ଼ି ଘୋଷିଦେଇ ପଣ୍ଡିତ ? ପାଗଦ୍ୱୀପରେ ଗୋଟେ ଆଇ. ଏ. ଏସ୍ ଅଛି... ଧୂଳି ଉଡ଼ୁଚି ବୋଲି ତା' କାର୍ ଆଗରେ ଆଉ ଗୋଟିଏ କାର୍ ପାଣି ସ୍ପ୍ରେ କରି ଚାଲିଚି...ଆଉ ଆପଣ ଜଣେ ଆଇ. ଏ. ଏସ୍. ! ପଚାଶ ହଜାର ଟଙ୍କା ଦେଲେ ଆପଣ ଅଧ୍ୟାପିକା ରଖିକିଣି ଦେବେ ସୁନ୍ଦର ମୁହଁ ଦେଖି ଆଉ ସେମାନଙ୍କୁ ଜବରଦସ୍ତ ପିକ୍‌ନିକରେ ନେଇ ରାତ୍ରିଯାପନ କରିବେ ଡ଼ାକ ବଙ୍ଗଳାରେ ? ଆଉ ଆମେ ଅଧ୍ୟାପକମାନେ ଆପଣଙ୍କ ଆଖିରେ କୁକୁର ?

[ ନିଶିକାନ୍ତ ଏହି ସଂଳାପ କହିଲାବେଳେ ସିଡ଼ି ଉପରେ ଆବିର୍ଭୂତା ହେଲେ ମନିକା ଦେବୀ । କେଶ ମୁକୁଳା ହୋଇପାରେ—ନହେଲେ ଧଳାଫୁଲ ଦେଇ ଦକ୍ଷିଣ ଭାରତୀୟ ଶୈଳୀରେ ଲମ୍ବା ହାର ଝୁଲି ଯାଇପାରେ । ଓଠରେ ଦରକାର ଅପେକ୍ଷା ଅଧିକ ନାଲି ଲିପଷ୍ଟିକ । ମୁହଁ ଗମ୍ଭୀର ]

ମନିକା ।। ବାଃ ! ବଢ଼ିଆ ଭାଷଣ ଚାଲିଚି ମାଷ୍ଟେ ! ଶେଷକୁ ମୋ' ସ୍ୱାମୀଙ୍କୁ ମଧ୍ୟ ଆପଣ ପାଠ ପଢ଼େଇବେ ନା କ'ଣ ?

ନିଶି ।। ଆପଣଙ୍କ ସ୍ୱାମୀଙ୍କ ଭଳି ଏମିତି ଶହ ଶହ ଆଇ. ଏ. ଏସ. ମୋ' ପାଖରେ ହିଁ ପାଠ ପଢ଼ିଛନ୍ତି ମାଡ଼ାମ୍ ! ସେ କଥା ଆପଣ ଜାଣିନାହାନ୍ତି କେମିତି ?

ମନିକା ।। ଜାଣିବାର ସୁଯୋଗ ଆପଣ ଆଉ ଦେଲେ କେତେବେଳେ ? ପୁଅଟା ତ ତିନିଥର "ପ୍ଲସ୍‌ଟୁ"ରେ ଫେଲ ହେଇଣି ଆପଣଙ୍କ ପାଖରେ ପାଠପଢ଼ି !

ନିଶି ।। ପୁଅଟା ମୋ' ପାଖରେ ପାଠପଢ଼ି ଫେଲ୍ ହେଲା ନା ଆଇ. ଏ. ଏସ୍. ପୁଅ ବୋଲି ଫୁଟାଣି ମାରି ମାରି ଫେଲ ହେଲା ସେ କଥା ଚିନ୍ତା କରିଛନ୍ତି ଆପଣ ? ପ୍ରଥମେ ଆପଣମାନେ ମଣିଷ ହୁଅନ୍ତୁ...ତା'ପରେ ପୁଅକୁ ମଣିଷ କରିବେ ! ବାପ ଆଇ. ଏ. ଏସ୍. ବୋଲି ପୁଅଟା ମନକୁ ମନ ପାଶ୍ ହୋଇଯିବନା କ'ଣ ?

ମନିକା ।। ଯଦି ନ ହବ, ଆଜିଠାରୁ ଆପଣଙ୍କର ଟ୍ୟୁସନ୍ ବନ୍ଦ !

ନିଶି ।। ସେଇଠୁ ? My foot ! ଆପଣ ବନ୍ଦ ନ କରିଥିଲେ ମୁଁ ବନ୍ଦ କରିଥାନ୍ତି ମନକୁ ମନ ! ଏଇଠି ଆପଣଙ୍କ ଘର ପାଇଁ ସୁଜି ଆଉ ତେଲ ବୋହିବା ଅପେକ୍ଷା ଟ୍ୟୁସନ୍ ନ କରିବା ହଜାର ଗୁଣରେ ଭଲ ! ମୁଁ ଚାଲିଲି । ଧନ୍ୟବାଦ !

[ ନିଶିକାନ୍ତ ପଚ୍ଛପଟ ପାହାଚ ଦେଇ ଗଲିଯାଉ-
ଥିଲେ, ପାହାଚ ଉପରେ ପଛକୁ ଚାହିଁ ଆଇ.ଏ.
ଏସ୍. ଦମ୍ପତିଙ୍କ ଉଦ୍ଦେଶ୍ୟରେ କହିଲେ ]

ହଁ ଆଜି ହେଲା ୨୫ ଡ଼ିସେମ୍ବର ! ନୂଆବର୍ଷ ପୁର୍ବରୁ ମୋ' ଟଙ୍କାଟା ଯେମିତିମୋ:' ପାଖରେ ପହଞ୍ଚିପାଏ, ମୁଁ ମାସେକାଳ ପାଠ ପଢ଼େଇ ପୁଣି ଟଙ୍କାଟା ଭିକ୍ଷା କରିବା ପାଇଁ ଏଇଠିକି ଆସିପାରିବି ନାହିଁ...ଆପଣ ନିଜେ ନେଇ ପହଞ୍ଚାଇବେ !

[ ଚାଲିଗଲେ ]

ମନିକା ।। (ଉପରୁ ଓହ୍ଲେଇ ଆସିଲେ ଆଉ ଦୁଇ ପାହାଚ) ଏମିତିଆ ମାଷ୍ଟ୍ରକୁ କଲେଜରୁ ଡ଼ିସ୍‌ମିସ୍ କରିଦିଆଯିବା ଉଚିତ । ୟୁନିଭର୍ସିଟିକୁ କହି ଯାକୁ କୌଣସି ଖାତା ଦେଖିବା ପାଇଁ ସୁଯୋଗ ଦିଆ ନ ଯିବା ଉଚିତ ।

ସଞ୍ଜୟ ।। ଇଡ଼ିଅଟ୍ ! ଆଇ. ଏ. ଏସ୍ କିଏ ମାଷ୍ଟ୍ର କିଏ...ଏଗୁଡ଼ାକ ଆମ ମୁହଁରେ କଥା କହିବାର ସାହସ ପାଇଲେଣି ! ସ୍ମାଷ୍ କରିଦେବି !

ମନିକା ।। ଶୀଘ୍ର କରିବା ଉଚିତ, ଗତବର୍ଷ କେତେ କରି କହିଲି, ତମର ଏତେ ଚିହ୍ନା ଅଛନ୍ତି—ରଜାର ପୋଷ୍ଟ୍ ନମ୍ବର ଟିକିଏ ବଢ଼େଇ ଦିଅ । କଲ ନାହିଁ ବୁଢ଼ା...ଆଦର୍ଶ ଦେଖେଇଲ...ସେଇଥି ପାଇଁ ପୁଅ ମୋର ଫେଲ୍ ହେଲା ।

ସଞ୍ଜୟ ।। ନହେଲେ ମାଷ୍ଟ୍ରଗୁଡ଼ା ଯୋଉ ଆଦର୍ଶ ବାଲତ...ଟ୍ୟୁସନ କରି ଟ୍ରକ୍ ଚଲେଇଲେଣି - ହେଇ ଜାଣିଚ ଗୋଟେ ଅଧ୍ୟାପକ ଏବେ ଗୋଟେ କାର୍ କିଣିଛି...କିଣିଛି ତ କିଣିଛି...ନିଜେ କାର ଚଲେଇବା ବି ଶିଖିଗଲଣି (ହସିଲେ) ଘରେ କିନ୍ତୁ ପୋଇଢ଼ଙ୍କ ବି ମିଳୁନି ଖାଇବା ପାଇଁ !

ମନିକା ।। ଭଲ ଗୋଟେ ଶବ୍ଦ ତମର ସରକାର ବାହାର କରିଛି ! ବୁ-ଦ୍ଧି ଜୀ-ବୀ—!! ଆଜିକାଲି ଇଂରାଜୀରେ ଦସ୍ତଖତ କଲେ ମଧ୍ୟ ବୁଦ୍ଧିଜୀବୀ...ଖବର କାଗଜରେ ସମ୍ପାଦକଙ୍କୁ ପତ୍ର ଲେଖିଲେ ମଧ୍ୟ ବୁଦ୍ଧିଜୀବୀ ! (ହସିଲେ)

ସଞ୍ଜୟ ।। ପୋଇଢ଼ଙ୍କ ଆଉ କଖାରୁଖିଆ ମାଷ୍ଟ୍ର ମଧ୍ୟ ବୁଦ୍ଧିଜୀବୀ !! (ହସିଲେ)

[ ସ୍ୱାମୀ-ସ୍ତ୍ରୀଙ୍କ ହସ ଭିତରେ ଧପ କରି ଆଲୁଅ କଟିଲା ଏବଂ ସମବେତ କଂଠରେ ଶୁଭିଲା : "ଶ୍ରମିକ, ମଜଦୂର ଏକ ହୁଅ—ଏକ ହୁଅ" ! "ଆମର ଦରକାର—ଆଉ ଏକ ସ୍ୱାଧୀନତା".. "ସୂତାକଳ ଡ଼ାଇରେକ୍ଟର— ମୁର୍ଦ୍ଦାବାଦ୍...ମୁର୍ଦ୍ଦାବାଦ୍ !"

ଯଦି ପାର୍ଶ୍ୱକଳାକାରଙ୍କର ଅଭାବ ନାହିଁ – ତା' ହେଲେ ସାଇକ୍ଲୋରେମା ଓ ପଛଗେଟ୍ ମଧ୍ୟରେ ଥିବା ଫାଙ୍କା ସ୍ଥାନରେ ଗୋଟିଏ ଶୋଭଯାତ୍ରା ଚାଲି ଯାଇପାରେ ।
ଏପଟେ ଡ୍ରାୟାସ୍ ଭିତରୁ ଝୁଅ୍ଣୀ ଧରି ଉମା ବାହାରି ଆସିଲେ ଏବଂ ଘର ସଫା କରୁ କରୁ ମଞ୍ଚ ପଛପଟକୁ ଥିବା ଖୁମ୍ବକୁ ଧରି ଠିଆ ହୋଇ ପଛପଟ ରାସ୍ତାକୁ ଚାହିଁ ବ୍ୟସ୍ତ ହୋଇ ପଡ଼ିଲେ ।
ମଞ୍ଚର ବାମପଟରୁ ପଶି ଆସିଲେ ନିଶିକାନ୍ତ - ଡ୍ରାୟାସ୍ ତଳେ ପଡ଼ିଥିବା ସୋଫା ପାଖକୁ । ତା'ପରେ ପାହାଚ ଦେଇ ଚଢ଼ିଗଲେ ଡ୍ରାୟାସ୍ ଉପରକୁ ।
ଏ ସମସ୍ତ ସମସ୍ଥାନିକ ଅଭିନୟ ଦୃଶ୍ୟ ଚାଲିଥିଲା ବେଳେ ଆବହ ସଙ୍ଗୀତରେ ଏକ ମାନସିକ ଉଦ୍‌ବେଗର ସୂଚନା ମିଳିବା ଆବଶ୍ୟକ ]

ଉମା ।। ଆମ ସ୍ୱର ତା' ଭିତରେ ଅଛି ?

ନିଶି ।। ଥିବ । ସେ ଅପଦାର୍ଥଟା ପାଇଁ ମୋର ଚାକିରି ଗଲା ବୋଲି ଜାଣ !

ଉମା ।। କାହିଁକି ?

ନିଶି ।। ଦାସବର୍ମାଙ୍କୁ ସ୍ୱର ଯୋଉ କଲର ଧରି ଚୌକିରୁ ଉଠେଇ ଆଣିଥିଲା - ସେଇଦିନଠୁ ମତେ ତା' ସ୍ତ୍ରୀ ଧମକ ଦେଇ ଆସୁଥିଲା ।

ଉମା ।। ମଲା ! ସିଏ ତା'ର ସରକାରୀ ପଇସା ଖାଇଲା—ଏମାନେ ପିଲାମାନେ ଆନ୍ଦୋଳନ କଲେ । ସେଥିରେ ତମ ଚାକିରିଟା କାହିଁକି ଖାଇବ ?

ନିଶି ।। ଆହେ ତା' ସ୍ତ୍ରୀ ଚାହୁଁଥିଲା ପୁଅ ମୋର ତାଙ୍କ ପାଦତଳେ ମୁଣ୍ଡ ଆମାରି କ୍ଷମା ମାଗିବ । ଆଉ ମୁଁ ସ୍ୱରକୁ ବୁଝେଇବି..."ଯା' ବାପା ..ସିଏ ହଉଛନ୍ତି ଆଇ. ଏ. ଏସ୍. ଅଫିସର...ବହୁ ମନ୍ତ୍ରୀଙ୍କୁ ଭୁଆଁ ବୁଲେଇ ଦେଶଟାକୁ ଖୋଳ କରିସାରିଲେଣି...ତାଙ୍କ ପାଖରେ ବହୁତ ପଇସା... ଏବଂ ବ୍ରିଟିଶ୍ ସାଇବମାନେ ଦେଶରୁ ଚାଲିଗଲା ପରେ ଏମାନେ ସାଇବ ଏବଂ ଆମର ହର୍ତ୍ତା କର୍ତ୍ତା ଭଗ୍ୟବିଧାତା ତେଣୁ ତାଙ୍କୁ ଭଗବାନ ମନେ କରି ତାଙ୍କ ଗୋଡ଼ତଳେ ପଡ଼ିଯା'..."

ଉମା ।। ମଲା, ମଲା...ମୋ' ପୁଅ କାହିଁକି ସେ ଚୋରଟାର ଗୋଡ଼ତଳେ ପଡ଼ିବ ବା ? ତମେ କାହିଁକି ସ୍ୱରକୁ ଏ ବିଷୟରେ ବୁଝାଇବାକୁ ଯିବ ଯେ ?

ନିଶି ।। କହିଲା "ପୋଇଡଙ୍କ ଖୁଆ ମାଷ୍ଟର" !

ଉମା ।। କାହିଁକି ମ' ? ଆମେ କ'ଣ ତାଙ୍କ ଘରକୁ ମାଛ, ମାଂସ, ଚିକେନ୍ ମାଗିବାକୁ ଯାଇଥିଲୁ ? ଛି-ଛି-ଛି-ଛି-ଛି ଏଗୁଡ଼ା ବଡ଼ଲୋକ ଖୋଳ ଭିତରେ ଲୁଚିଥିବା ନାଙ୍ଗୁଡ଼ିଆ ପୋକ...ଗ୍ରେଟ ଲୋକ...ପଇସା ପାଇଁ ଘରର ଝିଅ ବୋହୂଙ୍କୁ ବଜାରରେ ନିଲାମ କରିଦେବେ...ସେ ଗୁଡ଼ା ସାଙ୍ଗରେ କଥାବାର୍ତ୍ତା କ'ଣ !

ନିଶି ।। କଥାବାର୍ତ୍ତା ହେଲେ ଆଉ କ'ଣ ହବ ଉମା ? ଟ୍ରୁ୍ୟସନଟା ଆଜିଠୁ ଗଲା । ସପ୍ତାହେ ଭିତରେ ଚାକିରିଟା ଯାଇପାରେ ।

ଉମା ।। ତା' ମାନେ ? ତା' ମାନେ...ଏ ମାସରେ ଚଳିବା କେମିତି ?

ନିଶି ।। ପ୍ରାଇଭେଟ କଲେଜ ଚାକିରି ସେୟା, ପ୍ରିନ୍‌ସିପାଲ ମଧ୍ୟ ସେୟା—ଅଥରିଟି ଯାହା କହିବେ—ଯେତେ ମିଛ ହୋଇଥାଉ ପଛେ, ତାକୁ ସେମାନେ ଆଜ୍ଞାଧୀନ କୁକୁର ଭଳି ମାନିବେ ଆଉ ମତେ ଚାକିରିରୁ ବାହାର କରି-ଦେବେ । ଆଉ ଦେଖିବ ହଠାତ୍ ଦିନେ ଜାପାନରେ ବୋମା ପଡ଼ିଲା ପରି ମୋ' ପରିବାର ଉପରେ ଅତ୍ୟାଚାରର ବୋମା ଫୁଟି ଆମ ସମସ୍ତଙ୍କୁ ଧ୍ୱଂସ କରିଦେବ !

[ହଠାତ୍ ବାହାରେ ଗୋଟାଏ ବୋମା ଫୁଟିବା ଶବ୍ଦ ହେଲା ଏବଂ ପଛପଟ ଗେଟ୍ ବାହାରୁ ଧୂଆଁ ଉଠିଲା, ଚମକି ଉଠିଲେ ଉମା ! ଛାତିରେ ହାତ ପକାଇ କହିଲେ :]

ଉମା ।। ଏମା' ! ବୋମା କ'ଣ ଫୁଟିଲାଣି ! ସ୍ୱର ଆମର ସେଇଠି ଅଛି ?

[ଦୌଡ଼ିଗଲେ ମଞ୍ଚ ପଛପଟ ଦରଜା ପାଖକୁ, ପୁଣି ଥରେ ଫେରିଆସିଲେ ନିଶିକାନ୍ତଙ୍କ ପାଖକୁ, ଆବହ ସଙ୍ଗୀତ ଦ୍ରୁତ ଲୟରେ ବାଜିବ ]

ଟିକିଏ ଦୌଡ଼ିଯାଇ ଦେଖିଲ କ'ଣ ହେଲା !

ନିଶି ।। (ସ୍ତମ୍ଭୀଭୂତ ଅବସ୍ଥାରେ ଠିଆହୋଇ ରହିଲେ)

ଉମା ।। ଆବାକାବା ହେଇ କଣ ଠିଆ ହୋଇ ରହିଲ ଯେ ? ଯାଅ—

[ଦୌଡ଼ି ଆସିଲା ଶିବ । ଯୁବକ ଓ ସ୍ୱରର ସାଙ୍ଗ । ତା'ର ପାଟିଲାଗେ କଥା କହିଲା ବେଳେ]

ଶିବ ।। ମା...ମାଉସୀ ! ସ୍ୱର !

ଉମା ।। କଣ ହେଇଚି ଶିବୁ ?

ଶିବୁ || ବୋ.. ବୋ...ବୋ...ବୋମା ଫୁଟୁଚି

ନିଶି || କଣ ହେଉଛି ଶିବୁ ?

ଶିବୁ || ସ୍...ସ୍ . ସାର୍ ! ନମସ୍ ସ୍ କାର୍ ସାର୍ !

ନିଶି || ଆରେ କଣ ହେଉଚି ? ତୁ' ଏମିତି ଧକଉଚୁ କାହିଁକି ?

ଶିବୁ || ପୋ...ପୋ...ଲିସ୍ ବୋମା ଫୁଟେଇଲଣି ସାର୍ !

ଉମା || ବୋମା ଫୁଟୋଉଚି ପୋଲିସ୍ ?

ଶିବୁ || ଆ···ଆ···ଉରି ଫୁଟେଇବ ! ଆ...ଆ ଆପଣ ସୁରକୁ ବୁଝାନ୍ତୁ ସ୍ସାର୍··· ଏ ଧର୍ମଘଟ ପ୍ରତ୍ୟାହାର କରିନେବା ଉଚିତ···ନହେଲେ ପୋଲିସ୍ ତା ଉପରକୁ ଫାୟାରିଂ କରିବ

ନିଶି || କିନ୍ତୁ ମୋ' କଥାରେ ସୁର କ'ଣ ଧର୍ମଘଟ ପ୍ରତ୍ୟାହାର କରିବାକୁ ରଜି-ହେବ ? ତମେମାନେ ତ ତାର ବନ୍ଧୁ···ତମେ ଟିକିଏ ବୁଝୋଉନା ?

ଶିବୁ || ଆ···ଆମେ କହିଲେ ଶୁଣୁନି ସାର୍ ! ଆପଣ କହିଲେ ନିଶ୍ଚୟ ଶୁଣିବ !

ନିଶି || ବୁଝେଇ ବୁଝେଇ ମୁଁ ଥକି ଗଲିଣି ବାପା !

ଶିବୁ || ସିଏ କ'ଣ ତାର ଅବସ୍ଥା ବୁଝିପାରୁନି ନା କ'ଣ ? ମୋର ସିନା ବାପା ମା' କେ···କେହି ନାହାନ୍ତି···ପାଠ ପଢ଼ିବାକୁ ଇଚ୍ଛା ନଥିଲ ବୋଲି କୌଣସି ମତେ କପି କରି ପାଶ୍ କରିଚି···ସୁ-ସୁରର କ'ଣ ଅସୁବିଧା ? ଅଧ୍ୟାପକର ପୁଅ...ଭଲ ପଢ଼ୁଥିଲ...ମୋ'ଭଳି କପିକରି ଗ୍ରାଜୁଏଟ ହେଇନି ।

ନିଶି || କପି ହଉ ପଛେ—ଆଜିକାଲି ଗୋଟେ ଡ଼ିଗ୍ରୀର ଯଥେଷ୍ଟ ମୂଲ୍ୟ ଅଛି ବାପା !

ଶିବୁ || ଆପଣ କଣ ଜାଣିନାହାନ୍ତି ସାର୍···? ଆଜିକାଲି ବି. ଏ.ରୁ ଆଇ. ଏ. ଏସ୍. ପର୍ଯ୍ୟନ୍ତ ସବୁ କପି...ଫିଲ୍ମରୁ କପି କରି ନାଟକ ..ଇଂରଜୀରୁ ବଙ୍ଗଳାରୁ କପି କରି ସାହିତ୍ୟ···ସବୁ ଚାଲିଚି···

ନିଶି || କପି କରି ଯେଉଁମାନେ ଓ. ଏ. ଏସ୍., ଆଇ. ଏ. ଏସ୍. ପାଇଛନ୍ତି ସେମାନେହିଁ ସରକାରଟାକୁ ଗୋଟେ କପି ସରକାର କରିଦେଲେଣି··· ସମାଜଟାଖାଲି କପିରେ ଚାଲୁଚି...ତେଣୁ ଶିକ୍ଷାର ମାନଦଣ୍ଡ ଭାଙ୍ଗିବ ହିଁ ଭାଙ୍ଗିବ···କିନ୍ତୁ ଦିନ ଆସିବ ଶିବୁ . ପୁଣିଥରେ ଲୋକେ ବୁଝିବେ···ଏମିତି ପାଠ ପଢ଼ିପଢ଼ି ଏ ଦେଶର ନେତାମାନେ ଦେଶକୁ ସ୍ୱାଧୀନ କରିଛନ୍ତି... ମଧୁ ଦାସ, ଗୋପବନ୍ଧୁ···ସମସ୍ତେ...! ସେମାନେହିଁ ଶିଖେଇଛନ୍ତି ଦେଶକୁ

ସ୍ୱାଧୀନ କରିବା ପାଇଁ ଗଣ୍ଡାକଡ଼ାରୁ ହିଁ ସଂଗ୍ରାମ ଆରମ୍ଭ ହେବ...ହେଲେ ଶାନ୍ତି ଆଉ ଅହିଂସା ଦ୍ୱାରା ନୁହେ...ହୁଏତ ଏମିତି ଶୋଭାଯାତ୍ରା ଆଉ ବୋମାମାଡ଼ରୁ ଆମେ ପାଇବା ଆଉ ଗୋଟାଏ ସ୍ୱାଧୀନତା !

ଶିବୁ ।। ତା' ମାନେ ଆପଣ ସ୍ୱରକୁ ସମର୍ଥନ କରୁଛନ୍ତି ସାର୍ ? ସମର୍ଥନ କରୁଛନ୍ତି ଏ ଧର୍ମଘଟ ଆଉ ଶୋଭାଯାତ୍ରାମାନଙ୍କୁ ?

ନିଶି ।। ସେ'ତ କିଛି ନୁହେ, ଖାଲି ମଡ଼ର କରଯିବା ଉଚିତ...ଯୋଉ ବଡ଼ବଡ଼ିଆ ମାନେ ନିଜେ ଦୁର୍ନୀତି କରି ଶାନ୍ତି ଆଉ ଅହିଂସା ଉପରେ ଭାଷଣ ଦଉଛନ୍ତି ସେମାନଙ୍କୁ ହତ୍ୟା କରଯିବା ଉଚିତ...ଅନ୍ତତଃ ମୁଁ ଏୟା ଭାବୁଚି ଶିବୁ... ମୁଁ ଦେଖୁଛି ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉପରେ କେମିତି ଅତ୍ୟାଚାର ହେଉଚି...ମୁଁ ଦେଖୁଚି ଶୋଭାଯାତ୍ରା କରିବା ଲୋକ ଉପରେ କେମିତି

ଲଠିମାଡ଼ ହେଉଚି...ଗତି ଗତି ଚୋରଙ୍କ ପରି ଗାଁ ଗାଁ ବୁଲି ସେମାନେ ଲୋକଙ୍କୁ ବୁଝେଇଛନ୍ତି ! ସେମିତି ଦିନେ ଏଇ ଶୋଭାଯାତ୍ରାରେ ଯାଉଥିବା ଲୋକେ ବୁଝିବେ...ତୋ' ପରି ଆଉ ସ୍ୱର ଭଳି ଯୁବକମାନେ ହିଁ ଆଉଥରେ ଭାରତବର୍ଷକୁ ସ୍ୱାଧୀନ କରିବେ ଏଇ ଆଇ. ଏ. ଏସ୍, ଓ. ଏ. ଏସ୍ ମାନଂକ ଅତ୍ୟାଚାରରୁ ।

ଶିବୁ ।। ତା'ମାନେ...ଆପଣ ସ୍ୱରକୁ ସପୋର୍ଟ କରୁଛନ୍ତି ସାର୍ ? କିନ୍ତୁ ଆପଣଙ୍କୁ କ'ଣ ମିଳିବ ସାର୍ ? ଚାକିରି ଚାଲିଯିବ—

ନିଶି ।। ଚାକିରି ଆଉ ନାହିଁ ।

ଶିବୁ ।। ଆପଣଙ୍କ ସାନ ପୁଅ ବାବୁକୁ ଟାଏଫଏଡ୍ . ତା'ର ଚିକିତ୍ସା ପାଇଁ ଟଙ୍କା ଦରକାର...ଡ଼ାକ୍ତର କଣ ଫିଜ୍ ନ ନେଇ ଚିକିତ୍ସା କରିବ ସାର୍ ? ତା'ପରେ ପୁଣି ପଥି ଅଛି—ଔଷଧ ଅଛି...କୋଉଠୁ ଆଣିବ ସାର୍...? ଦେଖନ୍ତୁ...ଗୋଟାଏ ପଟେ ଅ ..ଅନ୍ୟାୟ... ଆଉ ...ଦୁ...ଦୁ...ର୍ନୀତି ବିରୁଦ୍ଧରେ ସଂଗ୍ରାମ...ଆଉ ଗୋଟାଏ ପଟେ ଜୀବନ...କୋଉଟାକୁ ବାଛିବେ ଆପଣ ଜାଣନ୍ତି...ମୁଁ - ଚାଲିଲି ସାର୍...

[ ଶିବୁ ଚାଲିଗଲା । ନିଶିକାନ୍ତଙ୍କୁ ଖୁବ୍...ଏକଲା ଲାଗିଲା । ଆବହ ସଂଗୀତ କରୁଣ...]

ନିଶି ।। ବାଛିବା ପାଇଁ କିଛି ଆଉ ବୟସ ନାହିଁରେ ଶିବୁ...ସତ୍ୟବାଦୀ ବନବିଦ୍ୟାଳୟରେ ଗୋପବନ୍ଧୁ ଦାସ ଥିଲେ...ବନ୍ୟା ଅଞ୍ଚଳରେ ଲୋକଙ୍କ ସେବା କରୁ କରୁ ନିଜ ପୁଅଟା ମରିଗଲା...ତଥାପି କାହିଁ ସିଏ ତ ଭାଙ୍ଗି ନଥିଲେ...ନିଜ ମୂଲ୍ୟବୋଧ ଆଉ ଆଦର୍ଶକୁ ସିଏ ବଜାୟ ରଖିଥିଲେ !

ଶିବୁର ସ୍ୱର ।। ଆପଣଙ୍କ ସାନ ପୁଅ ବାବୁକୁ ଟାଏଫଏଡ଼୍...ତା'ର ଚିକିତ୍ସା ପାଇଁ ଟଙ୍କା ଦରକାର...ଡ଼ାକ୍ତର କ'ଣ ଫିଜ୍ ନ ନେଇ ଚିକିତ୍ସା କରିବ ସାର୍ ? ତା'ପରେ ପୁଣି ପଥି ଅଛି—ଔଷଧ ଅଛି... କୋଉଠୁ ଆଣିବେ ସାର୍ ? ଦେଖନ୍ତୁ...ଗୋଟାଏ ପଟେ...ଅ...ଅନ୍ୟାୟ...ଆଉ...ଦୁ...ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ...ଆଉ ଗୋଟାଏ ପଟେ ଜୀବନ...କୋଉଟାକୁ ବାଛିବେ ଆପଣ ଜାଣନ୍ତି ...!......

ନିଶି ।। କୋଉଟାକୁ ବାଛିବିରେ ଶିବୁ ? ମୁଁ ତ ଉତ୍କଳମଣି ହେଇପାରିବି ନାହିଁ ...ଆଉ ଯଦି ବି ହୁଏ...ଏ ସ୍ୱାର୍ଥ ସର୍ବସ୍ୱ ସମାଜରେ ସମସ୍ତେ ହସିବେ କେବଳ...କହିବେ ଲୋକଟା ବୋକା ଥିଲା...ନ ହେଲେ ବାୟା ..

ତା'ପରେ ମୁଁ ମରିଗଲେ...ଗଲା ସବୁ—ଗୋଟାଏ ଷ୍ଟାଚ୍ୟୁମଧ୍ୟ କରିବେ ନାହିଁ...ଷ୍ଟାଚ୍ୟୁ କରି ଫୁଲମାଳ ଦେଲେ କ'ଣ ବା ହେବ ଯେ ? ମୋର ପରିବାରଟା ତ ଧ୍ୱଂସ ହେଇ ଯାଇଥିବ...ତା'ପରେ କୋଉ ଗୋଟେ ଛକ ଉପରେ ଥିବା ଗୋପବନ୍ଧୁଙ୍କ ଷ୍ଟାଚ୍ୟୁ ଉପରେ ଚଢ଼େଇମାନେ ବସିବେ ...ଆଉ ଝାଡ଼ା ଫେରିଲେ ସଫା କରିବା ପାଇଁ ମ୍ୟୁନିସିପାଲିଟି ବାଲା ମଧ୍ୟ ଆସିବ ନାହିଁ !

[ କ୍ରମଶଃ ଆଲୋକ ସ୍ତିମିତ ହେଲା ଏବଂ ପୁନରାୟ ଜଳିଲା ମଞ୍ଚର ବାମ ପଟେ, ଅର୍ଥାତ୍ ସଞ୍ଜୟ ଦାସ ବର୍ମାଙ୍କ ଘରେ । ସେଇଠି ଆଲୁଅ ଆସିଲା ବେଳକୁ ବିଜୟ ସାଙ୍ଗରେ ବସି ମଦ ଗ୍ଲାସରେ ଚିଅର୍ସ୍ କରୁଛନ୍ତି ମନିକା ଏବଂ ହସୁଛନ୍ତି ]

ମନିକା ।। ହାହାହାହାହା...ଚିଅର୍ସ୍ !

ବିଜୟ ।। ହାହାହାହାହା—ଚିଅର୍ସ୍ ତା'ମାନେ...ମୋନା ଡ଼ାର୍ଲିଂ ! ସ୍ୱାମୀ ତମର ...ଆଇମିନ୍ ତମର ସରକାରୀ ସ୍ୱାମୀ ସଞ୍ଜୟ ଦାସ ବର୍ମା ଆଜିଠୁ ଆଠଦିନ ଟୁଅର୍‌ରେ ଗଲେ ..

ମନିକା ।। ତା'ମାନେ ଆଠଦିନ ପର୍ଯ୍ୟନ୍ତ ତମର ମୋ' ଉପରେ ଅଖଣ୍ଡ ଅଧିକାର ଅଛି ବୋଲି କହିବାକୁ ଚାହୁଁଛ ନା କଣ ? ଦେଖ ବିଜୟ ! ପୁଅ ବଡ଼ ହେଲାଣି ...ଏଣିକି ତମର ଅଖଣ୍ଡ ଅଧିକାର ମାନଙ୍କୁ ସେ ସନ୍ଦେହ ଆଖିରେ ଦେଖିବ !

ବିଜୟ ।। ସନ୍ଦେହ ! ହାହାହାହାହା ! ତମେ ବୋଧେ ଭୁଲି ଯାଇଚ ମୋନା ଡ଼ାର୍ଲିଂ ! ତମ ପୁଅ ରଜା ଆଜକୁଆଲି ମୋର ପୁଅ...ତମ ସରକାରୀ ସ୍ୱାମୀ ଖାଲି ବାପା ପଦବୀର ସିଲ୍ ଉପରେ ଦସ୍ତଖତ କରିଛନ୍ତି !

ମନିକା ।। (ହସି) ଆରେ ସତେତ ! ସେତିକି ବେଳେ ତା'ର ଦିଲ୍ଲୀ ପୋଷ୍ଟିଂ ହେଇଥିଲ .. ଆଉ ସିଏ ଗୋଟେ ଆପାର୍ଟମେଣ୍ଟ୍ କିଣିବା ପାଇଁ ଆଠଲକ୍ଷ ଟଙ୍କା ଯୋଗାଡ଼ରେ ଘଣ୍ଟା ବ୍ୟସ୍ତ ହେଉଥିଲ ..

ବିଜୟ ।। ଆଉ ଆମେ ରୁବିକୁ ସେଇ ନିଶିକାନ୍ତ ଅଧ୍ୟାପକ ଘରେ ଛାଡ଼ିଦେଇ ପ୍ରଧାନ ପାଟ ଦେଖିବାକୁ ଯାଇ ସେ ଡାକବଙ୍ଗଳାରେ...

ମନିକା ।। ଭଗବାନ ! ତମେ ମାଲ୍‌ପିଇ ଯାହା ହଉଥିଲ...(ହସିଲ)

ବିଜୟ ।। ମାଲ୍‌ପିଇ ତମେ ବି ମତେ କିଛି କମ୍ ହଇରଣ କରିନା ବାବା ! ମୋର ମନେ ଅଛି...ତମେ ସବୁବେଳେ ହାଇଓ୍ୱେ ଛଡ଼ି ସେଇ ଗ୍ରେଚିଆ ରସ୍ତାରେ ଗାଡ଼ି ଚଲେଇବାକୁ ମତେ ବାଧ କରୁଥିଲ !

ମନିକା ।। କେଜାଣି...ମୋର କିଛି ମନେନାଇଁ ବାବା–ମୁଁ ମାଲ୍ ପିଇ ବେହୋସ ଅବସ୍ଥାରେ ଏ ଦେହଟାକୁ ତମ ଜିମା ଛାଡ଼ି ଦେଇଥିଲି ।

ବିଜୟ ।। ଆଜି କ'ଣ କରିବ ? ଘଡି ଦଶଟା ବାଜିଲଣି ଯେ ! ରଜା ଆଉ ରୁବି ତ ଡ଼ିନର ଖାଇ ଶୋଇଲେଣି ! ତମେ ଏବେ ଘରକୁ ଯିବାକୁ କହିବ ନା ଏଇଠି ରହିବାକୁ କହିବ ?

ମନିକା ।। ଏଇଠି ରହିବାକୁ ଇଚ୍ଛା ଯଦି ହଉଚି ତମ ଡ଼ିନର୍‌ଟା ଏଇଠିକି ନେଇଆସିବି ?

ବିଜୟ ।। ଗୁକରଟୋକା ?

ମନିକା ।। ରୋମାଣ୍ଟିକ୍ ସମୟଗୁଡ଼ାକୁ ଆମେ ପୁଣିଥରେ "ଫ୍ଲାସ୍‌ବ୍ୟାକ୍"ରେ ଦେଖିବାର ପ୍ଲାନ୍ କଲବେଳକୁ ଗୁକରଟୋକା କଥା କାହିଁକି ମନେ ପକାଉଚ ମୁଁ ବୁଝିପାରୁନି !

ବିଜୟ ।। ବୁଝି ପାରୁନା ? ତା'ହେଲେ ଆଉଟିକିଏ ପିଇଦିଅ !

[ ବିଜୟ ମୋନାକୁ ଆଉ ଗୋଟାଏ ପେଗ୍ ନଦେଇ ଯଥେଷ୍ଟ ମଦ ଦେଇଛି ଓ ମନିକା ତାକୁ ନିର୍ବିକଳ୍ପ ଭାବରେ ପିଇ ଦେଇ କହିଛନ୍ତି ]

ମନିକା ।। ମୁଁ ଡମର ଖାଇବା ନେଇ ଆଣୁଛି ! (ପୋଟି ନେଇ ମାରୁଥିଲ )

[ ମନିକା ଉଠିଲେ ଏବଂ ତାଙ୍କର ପାଦ ଠିକ୍ ପଡ଼ୁନଥିଲା । ସେ ସିଡ଼ି ଉପରକୁ ଟଳି ଟଳି ଦୁଇତିନି ପାହାଚ ଉଠିଥାଚନ୍ତି ବେଳକୁ ହଠାତ୍ କଲିଂବେଲ୍ ବାଜିଲା । ମନିକା ତଳକୁ ଓହ୍ଲାଇବାକୁ ଚେଷ୍ଟା କରୁ କରୁ ପଡ଼ିଯାଉଥିଲେ । ବିଜୟ କହିଲା ]

ବିଜୟ ।। ମୁଁ ଖୋଲୁଚି ମୋନା, Don't worry !

[ ବିଜୟ ଯାଇ ଦୁଆର ଖୋଲିଚି ଏବଂ ଆଟାଚି ନେଇ ପ୍ରବେଶ କରିଛନ୍ତି ସଞ୍ଜୟ ଦାସବର୍ମା ]

ହାଏ, ସଞ୍ଜୟ ! ତୁ' କେମିତି ଫେରିଆସିଲୁ ?

ସଞ୍ଜୟ ।। ତୁ' ଏଇଠି ? କେତେବେଳେ ଆସିଲୁ ?

ବିଜୟ ।। ଏଇ...ଧରିନିଅ...ପନ୍ଦର ମିନିଟ୍ ହେବ !

[ ସଞ୍ଜୟ ଆସି ବସିଚି ସୋଫା ଉପରେ ଏବଂ ଅଧା ପିଆ ମଦ ଗ୍ଲାସ ଉପରେ ନଜର ପଡ଼ିଚି ]

ସଞ୍ଜୟ ।। ଆସି ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଇଚୁ ?

ବିଜୟ ।। ମୁଁ ଆସି ପହଞ୍ଚିଲି ଗୋଟାଏ ଅର୍ଜେଣ୍ଟ୍ କାମରେ । ଦେଖିଲି ତୁ' ଟୁଅର୍‌ରେ ଯାଇଚୁ । ତୋ' ମିସେସ୍ କହିଲେ-ଡ଼ିନର ଖାଇ ଯିବା ପାଇଁ । ତେଣୁ ଏକା ଏକା ବୋର୍ କାହିଁକି ହେବି ପାଖରେ ଥିବା ବୋତଲଟାର ସଦ୍ ବ୍ୟବହାର କଲି ।

ସଞ୍ଜୟ ।। ବହୁତ ଭଲକାମ କଲ ଶିଳ୍ପପତି ! ତୋ'ର ଅର୍ଜେଣ୍ଟ୍ କଥାଟା କ'ଣ ସେ ବିଷୟରେ ଟିକିଏ ସମ୍ୟକ୍ ସୂଚନା ଦେଇ ପାରିବୁ ?

ବିଜୟ ।। କାମଟା ହେଲା ସଞ୍ଜୟ ! ତୁ' ଯୋଉ ସୂତା କଳର ଡ଼ାଇରେକ୍ଟର ଅଛୁ ମୁଁ ସେଇଥି ପାଇଁ କପା ସପ୍ଲାଇ କରିବି ।

ସଞ୍ଜୟ ।। ବର୍ଷକୁ ଆମର ପ୍ରାୟ ଷାଠିଏକୋଟି ଟଙ୍କାର ର' ମେଟେରିଆଲ୍ କିଣାଯାଏ, ଆଜି ସେଗୁଡ଼ା ଟେଣ୍ଡର୍ ଜରିଆରେ ହୁଏ !

ବିଜୟ ।। ଆରେ, ଟେଣ୍ଡର୍ କଥା ମୁଁ ଭଲଭବରେ ଜାଣିଚି ସଞ୍ଜୟ ! ହରିଆନାରୁ ବାଙ୍ଗାଲୋର ଯାଏଁ ମୋର କାରବାର ଚାଲିଚି...ମୁଁ କଣ ସେ ଗୁଡ଼ା

ଜାଣିନି ? ଗୁଡ଼...Straight କଥା...ତୋ'ର 10% କମିଶନ ମୁଁ ଆଗୁଆ ଦେଇଦେବି...ରଜି ?

ଅଜୟ ।। ତୁ' ମତେ କାର୍ପାସ ସ୍କାମ୍‌ରେ ପକେଇବୁ ଦେଖୁଚି !

ବିଜୟ ।। ଜମା ! ଜମା ତୋର ସେ ବିପଦ ଆସିବ ନାଇଁ...କିନ୍ତୁ ମୁଁ ଯୋଉ 10% କମିଶନ ଦେବି ସେଥିରୁ 2% ଜାତୀୟ ପାର୍ଟିକୁ ଡତେ ଦାନ କରିବାକୁ ପଡ଼ିବ ! ଦେଖୁବୁ ସି. ବି. ଆଇ, ତଦନ୍ତ କମିଶନ୍ କିଛି ଲଗୁହେବ ନାଇଁ । ଦରକାର ପଡ଼ିଲେ ମୋର ଦିଲ୍ଲୀ କଣ୍ଟାକ୍‌ଟ୍ ସବୁ ତୋ' ପାଇଁ ବ୍ୟବହାର କରଯିବ !

ଅଜୟ ।। That's something !

ବିଜୟ ।। Something ନୁହ—ବହୁତ କିଛି ! ଆଇ. ଏ. ଏସ୍. ଷ୍ଟାଇଲ୍ ଶୁଣକୀ ଗୁଡ଼...ଗୋଟେ କଲ୍‌ଚର ସାଙ୍ଗ ଅଛି...ଦେଶ ବାହାରେ ଫେଷ୍ଟିଭଲ୍ କରି ସରକାରକୁ ଖୋଳ କରିସାରିଲଣି...ଆଉ ଗୋଟେ ଚିଫ୍ ସେକ୍ରେଟାରୀରୁ ରିଟାୟାର୍ ହେଇ ଦିଲ୍ଲୀରେ ବିନମ୍ରତାର ଖୋଳ ଭିତରେ ସାହିତ୍ୟ ଗଳଗୀତି କରୁଛି । ସେମାନେ ଆମଠୁ ସିନିୟର୍ ଥିଲେ ଯାହ୍ନ ! ଆଉ ଆମର ସାଙ୍ଗ...ଯୋଉଟା ପାରଦ୍ୱୀପରେ ଅଛି...ପାରଦ୍ୱୀପ୍‌ରେ ସେଇଟା ସମ୍ରାଟ ଅଶୋକ ପରି ଚକିଲଣି । ବଙ୍ଗଳା ଭିତରେ ସ୍ୱିମିଂ ପୁଲ୍... ଅଶୋକଙ୍କ ସମୟର ବାର୍ମ...ବାର୍ମ ଭିତରେ ସ୍ତ୍ରୀ ତା'ର ଜଳକ୍ରୀଡ଼ା କରିବ ଆଉ "ସମ୍ରାଟ ମ୍ୟାନେଜିଂ ଡ଼ାଇରେକ୍ଟର" ଏଣିକି ନେହୁରୁ ବଙ୍ଗଳା ନଯାଇ ସ୍ୱିମିଂ ପୁଲ୍ ପାଖରେ ହାଫ୍‌ପ୍ୟାଣ୍ଟ୍/ବରମୁଡ଼ା ପିନ୍ଧି କବିତା ଲେଖୁବେ ଦେହର ଭୂଗୋଳ ଉପରେ । ତୁ କଣଟେ ଏମିତି କରିପକେଇଚୁ... ହେଇହେଇ ପଗ୍ଣଶ ଷାଠିଏ ଲକ୍ଷ ମାରିଦେଇଥିବୁ...that's nothing ! ସୁପରିଣ୍ଟେଣ୍ଡିଙ୍ଗ୍ ଇଞ୍ଜିନିଅର୍ କହିଲ ଗୋଟେ ଆଇଏଡ୍ ବର ଦରକାର ତା'ର ଝିଅପାଇଁ । ଯିଏ ଯେତେ ଯୌତୁକ ଦବ ତା'ଉପରେ ଦଶଲକ୍ଷ ଅଧିକା ନିଲମ୍ ଲଗେଇଦେଲ ପଅରିଦିନ ..ସାଙ୍ଗେ ସାଙ୍ଗେ ଗୋଟେ ଅଧ୍ୟାପକର ପୁଅ ବିକ୍ରୀ ହେଇଗଲ । ବାପ ତାକୁ ଚୂଡ଼ା ସନ୍ତୁଳା ଖୁଆଇ ଖୁଆଇ ପାଠ ଘୋଷେଇ ଥିଲ ! ତେଣୁ ତୁ' ଯୋଉ ଛ'କୋଟି ଟଙ୍କା ବର୍ଷକୁ ମୋ'ଠୁ ପାଇବୁ, ସେଥିରେ ତୋର ବହୁତ କିଛି ହେଇପାରିବ— ମୋନାକୁ ନେଇ ଖରଛୁଟିରେ ମରିସସ୍ ନହେଲେ ସିଙ୍ଗାପୁର ଗୁଲିଯାଇ ପାରିବୁ ! ସେଇଟା କେମିତି something ହେଲବେ ? Accept this offer. (Brief case ବଢ଼ାଇ) ନେ'...ତୋର ଆଡ଼ଭନ୍‌ସ୍... ପନ୍ଦର ଦିନ ଭିତରେ ମୋର ଅଡ଼ର୍ ଦରକାର ।

ସଞ୍ଜୟ ।। ଷ୍ଟ୍ରାଇକ୍ କରିଛନ୍ତି ବୋଲି ସୂତାକଳ ବନ୍ଦ ଅଛି ।

ବିଜୟ ।। ଦେଶର ସବୁ କମ୍ପାନୀ ବନ୍ଦ ହେଇଯିବା ଉଚିତ...ଗୋଟେ ମାଇପି ଇଣ୍ଡଷ୍ଟ୍ରିଆଲିଷ୍ଟ୍ ଚିଲିକା ହ୍ରଦଟାକୁ କିଣି ପକେଇଚି...ଆଉ ଗୋଟେ କାକିଜାଇ ପାହାଡ଼ଟା କିଣି ସେଇଠି ଗୋଟେ ହୋଟେଲ କରିବ ! Do you understand, ସଞ୍ଜୟ ?

ସଞ୍ଜୟ ।। (ମେଦପିଇ) ଯାହା କୁହ ଭଇ—ଆମେ ଦେଶ ଚଳଉଚୁ ! ଗୋଟେଦିନ ଷ୍ଟ୍ରାଇକ କଲେ ଏ ଦେଶଟାକୁ ଅଚଳ କରିଦବୁ ! ତେଣୁ ଆମେ ଦୟାକରି କିଛି କିଛି ମୂର୍ଖବୋଧକୁ ମଧ୍ୟ ସାଙ୍ଗରେ ଧରି ବୁଲୁଚୁ ! ନହେଲେ ଆଜିକାଲି ଯୋଉମାନେ ମନ୍ତ୍ରୀ ହଉଛନ୍ତି ସେଗୁଡ଼ାଙ୍କୁ ଚଳେଇ ହବନି । ଗତ ଇଲେକ୍ସନ ମାନଙ୍କରେ ଯୋଉମାନେ ମନ୍ତ୍ରୀ ହେଇଥିଲେ ସେଗୁଡ଼ା ସମ୍ପୂର୍ଣ୍ଣ ମୂର୍ଖ ଥିଲେ—ଏବେ ସେ ଗୁଡ଼ା ପାଠ ପଢ଼ିଲେଣି ! ତେଣୁ ବିଜୟ ! ଟେଣ୍ଡର୍‌ଟା ମୁଁ ତତେ ଦେଇ ନପାରେ !

ବିଜୟ ।। ମାନେ ! ସିଧା ଆଙ୍ଗୁଠିରେ ଘିଅ ବାହାରିବ ନାହିଁ ? ତା'ହେଲେ ମତେ ଆଙ୍ଗୁଠି ବଙ୍କା କରିବାକୁ ପଡ଼ିବ ସଞ୍ଜୟ ! ତୋ' ପାଇଁ ମୁଁ ଛ' କୋଟି ଟଙ୍କାର ବନ୍ଦୋବସ୍ତ କରୁଚି...ଅଥଚ ତୁ ମତେ ଆଇ. ଏ. ଏସ୍. ଗ୍ଲାକି ଦେଖେଇ ମନା କରିଦବୁ ? Impossible ! ଥରେ ମୁଁ ଟେଣ୍ଡରଟା ନେବି ବୋଲି କହିଚି ମାନେ ନେବି । ଯେମିତି ହଉ ନେବି ।

ସଞ୍ଜୟ ।। ତୁ' ମତେ ଧମକ ଦଉଚୁ ବିଜୟ ?

ବିଜୟ ।। ଏ ପର୍ଯ୍ୟନ୍ତ ଦେଇନି ! ଦେଲେ ତୋର ପରିଣାମ କ'ଣ ହବ ଅନୁମାନ କରି ନେବା ଉଚିତ ସଞ୍ଜୟ ! ମନେଥିବ ମାଟ୍ରିକ୍‌ଠାରୁ M. A. ପର୍ଯ୍ୟନ୍ତ ତୁ' ମୋ' ସାଙ୍ଗରେ ଏକା ସାଙ୍ଗରେ ପାଠ ପଢ଼ିଚୁ ! ପାଠରେ ମତେ କେବେ ଟପି ଯାଇ ପାରିନୁ । ତୁ' ପାଓ୍ୱାର୍ ପାଇଁ IASରେ ଜଏନ୍ କଲୁ ଆଉ ମୁଁ ଟଙ୍କା ପାଇଁ ବ୍ୟବସାୟରେ Join କରିଚି ।

ସଞ୍ଜୟ ।। ମତେ ଟଙ୍କା ଦେଖେଇ ଡରଉଚୁ ?

ବିଜୟ ।। ଡରଉ ନାହିଁ ମି ସଞ୍ଜୟ ଦାସ ବର୍ମା ! ଯେତେଦିନ ପର୍ଯ୍ୟନ୍ତ ଏ ସମାଜରେ ବସ୍ତୁବାଦ ଗୁଲିଥିବ...ଗାଡ଼ି, କୋଠା ଆଉ ହୋଟେଲ ମାନଙ୍କୁ ସାଲ୍ୟୁଟ୍ ମରଯାଉଥିବ ତମେ ଆଇ. ଏ. ଏସ୍. ମାନେ ଆମ କଥା ଶୁଣିବା ପାଇଁ ବାଧ୍ୟ, ମନେ ଅଛି ସଞ୍ଜୟ ! ମନିକା ପଟ୍ଟନାୟକକୁ ଫୋର୍ଥ ଇଅର୍‌ରେ ତୁ ବି ପ୍ରେମ କରୁଥିଲୁ ଆଉ ମୁଁ ବି ଭଲ ପାଉଥିଲି । ହେଲେ ଆଇ. ଏ. ଏସ୍.

ପାଇଲ ପରେ ତା' ବାପା ତାକୁ ତୋ' ସାଙ୍ଗରେ ବାହା କରେଇଲ...
ସେଇଟା କ'ଣ ମୋ' ପାଇଁ କମ୍ ଅପମାନ ହେଲ ଭବିଚୁ ?

ସଞ୍ଜୟ ।। ସେଇଥି ପାଇଁ ତୁ' ମୋ' ପଛରେ ଲଗିଚୁ ?

[ ସିଡ଼ି ଉପରେ ପଡ଼ିଥିବା ମନିକା ଧୀରେ ଧୀରେ ଉଠିଲେ କିଛି ସମୟ ଠିଆ ହେଲେ, ପୁଣି ଲୁଚିଗଲେ । ଆଲୋକ ସେଇଠି spotted/ ଏକୀଭୂତ ହେବା ଆବଶ୍ୟକ ।]

ବିଜୟ ।। ଆଦୌ ନୁହ ସଞ୍ଜୟ ! ଏ ସବୁ ସତ୍ତ୍ୱେ ମୁଁ ତୋର ଶୁଭଚିନ୍ତକ ହେଇ ରହିଚି ଆଉ ରହିବି ମଧ୍ୟ । ଯେହେତୁ ତୁ' ଆଉ ମନିକା ମୋର ପିଲଦିନର ସାଙ୍ଗ, ମୁଁ ସବୁବେଳେ ତମର ଆର୍ଥିକ ସ୍ୱଚ୍ଛଳତା ଚାହେଁ...ମୁଁ ଚାହେଁ ତମେ ହଲିଡ଼େ' କଟେଇବା ପାଇଁ ମରିସସ ନହେଲେ ସିଙ୍ଗାପୁର ଯାଅ--ମୁଁ ଚାହେଁ ମନିକାର ବେକରେ ହୀରର ହାର ଚମକୁ...ଆଉ ମୁଁ ଚାହେଁ ତୋର ଇଂଲଣ୍ଡ ଆମେରିକାରେ ବ୍ୟବସାୟିକ ସମ୍ପର୍କ ବଢ଼ୁ--ଜାଣିଚୁ ସାବାକନାର ସାଟଁପାଇଁ ୟୁରୋପ ମାର୍କେଟ୍‌ରେ ବହୁତ ଚାହିଦା !

ସଞ୍ଜୟ ।। ଜାଣିଚି ।

ବିଜୟ ।। ତା'ହେଲେ ଫରେନ୍ ମାର୍କେଟିଂ କରୁନୁ କାହିଁକି ? ତା' ନକରି ଛ'ମାସ ହେଲ ସେଇଠି ଷ୍ଟ୍ରାଇକ୍ କାହିଁକି ଚଳେଇଛୁ ।

ସଞ୍ଜୟ ।। ସେ ଶ୍ରମିକ ବାଷ୍ଟାର୍ଡ୍‌ସ୍‌କୁ ମୁଁ ଉଚିତ ଶିକ୍ଷା ଦେବି । ଦେଖିବା କେତେଦିନ ଭୋକ ଉପାସରେ ଏମାନେ ନାଲି ପତାକା ଉଡ଼େଇବେ ଆଉ କଲାବ୍ୟାଜ୍ ପିନ୍ଧିବେ !

ବିଜୟ ।। ପୁଣି ପାଓ୍ୱାର ଦେଖେଇଲୁ ସଞ୍ଜୟ ? କ'ଣ ମିଳେ ଏ ପାଓ୍ୱାର୍‌ରୁ ? ନିଜ କଥା ବୁଝ--ନିଜ ସ୍ତ୍ରୀ ଆଉ ପିଲାଛୁଆ କଥା ବୁଝ ! ମୁଁ ଚାଲିଲି !

ସଞ୍ଜୟ ।। ତୁ' ଡ଼ିନର୍ ଖାଇଯିବୁ—ରହୁନୁ !

ବିଜୟ ।। ଥ୍ୟାଙ୍କ୍ୟୁ ! ହଠାତ୍ ମନେ ପଡ଼ିଲ ମତେ ଟିକିଏ 'ଓବେରଏ' ହୋଟେଲ ଯିବାକୁ ହବ । ଆମେରିକାରୁ ଦି'ଜଣ ଆସିଛନ୍ତି । ଏଠିକାର ଗୋଟେ ଅଧେ ମନ୍ତ୍ରୀ ମଧ୍ୟ ଯାଇପାରନ୍ତି--ବାଏ ! ଗୁଡ୍‌ନାଇଟ୍ !

ସଞ୍ଜୟ ।। ଗୁଡ୍‌ନାଇଟ୍ !

ବିଜୟ ।। (ପେଛରୁ ବୁଲି) ମୋ' କାମଟା କରିବୁ !

[ ସଞ୍ଜୟ ଆଗେଇ ଯାଇଚି ପଛପଟ ପାହାଡ଼ ପର୍ଯ୍ୟନ୍ତ ଏବଂ ଫେରିଲା ବାଟରେ ସିଡ଼ି ଉପରେ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିଥିବା ମନିକାକୁ ଦେଖିଲା ]

ସଞ୍ଜୟ ॥ ଆରେ ! ମନିକା ! ମନିକା !

ମନିକା ॥ (ଚକି ଚକି ଉଠି ) ଏଁ ! ତମେ ? ତମେ କେମିତି ଏଇଠି ?

ସଞ୍ଜୟ ॥ ମାନେ ? ତମର କ'ଣ ହେଇଚି ? ମନିକା ! Would you come to your senses ?

ମନିକା ॥ (ମଦ୍ୟପ ଭଳି) ତମର ତ ଦିଲ୍ଲୀ ଯିବାର ଥିଲା···ପୁଣି...ଏଇଠି କ'ଣ ! ଏଁ ? ଏଇଠି ହଲ୍ଲା କରୁଚ କାଇଁକି ସଞ୍ଜୟ ? ବିଜୟ ନାଇଁ ?

ସଞ୍ଜୟ ॥ ଓ ! ବୁଝିଲି ! ବିଜୟ ଆସି ତମକୁ ମଦ ଗୁଡ଼ାଏ ପିଆଇ ଦେଇଚି !

ମନିକା ॥ (ହସି) ତା'ପରେ ପରେ ପଗ୍ଭରିବ ବିଜୟ ମତେ ଆଉ କ'ଣ କ'ଣ ପିଆଇ ପାରେ ! ବୁଝିଲ ସଞ୍ଜୟ ଡ଼ାର୍ଲିଂ ! ତମେ ସେ ବିଗ୍ଭର ବିଜୟଟାକୁ ସବୁବେଳେ ଈର୍ଷା କର କାହିଁକି ? ଏଁ··· ! You silly little IAS ! ତମ ଅପେକ୍ଷା ବିଜୟ ହଜାରେ ଗୁଣ ଅଧିକା ଟ୍ୟାଲେଣ୍ଟେଡ୍ !

ସଞ୍ଜୟ ॥ ଓଃ ! Stop it ମୋନା ! କଲେଜରେ ପଢ଼ିଲା ଦିନଠୁ ତମେ ଖାଲି ବିଜୟକୁ ସପୋର୍ଟ କରି ଗ୍ଭଲିଚ ! ଘଟଣା କ'ଣ ?

ମନିକା ॥ ଘଟଣା ? (ହସିଲା) ଘଟଣା ହେଲା ତମେ ଗୋଟାଏ କଥାକୁହା ପ୍ରେମିକ ···ଆଉ ବିଜୟ ପ୍ରାକ୍ଟିକାଲ୍ ..

ସଞ୍ଜୟ ॥ ମାନେ ?

ମନିକା ॥ ମାନେ, ତମେ ଜୀବନ ସହ ପ୍ରେମର ସମ୍ପର୍କ ବିଷୟରେ ଖାଲି ଥିଓରୀ କୁହ—କିନ୍ତୁ ବିଜୟ ଜୀବନ ସାଙ୍ଗରେ ପ୍ରେମକୁ ମିଶାଇ ତମ ଥିଓରୀ ଗୁଡ଼ାକୁ ସାକାର କରିଦିଏ !

ସଞ୍ଜୟ ॥ Shut up ! (ଚିତ୍କାର କରିଚି)

ମନିକା ॥ (ଚିତ୍କାର କରି) Why ? କାହିଁକି ଚୁପ୍ କରିବି ସଞ୍ଜୟ ? ଓଡ଼ିଆ Style ରେ ମୁଁ ସାବିତ୍ରୀ ଓଷା କରୁଚି ବୋଲି ? ନା ଏଇ ସିନ୍ଦୂର ଟୋପାଟା ପିନ୍ଧିଛି ବୋଲି ? ତମେ ଭଲଭବେ ଜାଣିଚ—ମୋ' ବାପାର ଯୌତୁକ ଟଙ୍କାକୁ ବାହାହେଲ ପୂର୍ବରୁ ଏ ଦେହଟା Sex କ'ଣ ଭଲଭବେ ଜାଣିଥିଲା —ସେଥିପାଇଁ ଦିଲ୍ଲୀରେ ଥିଲାବେଳେ ଏ ଦେହଟାକୁ ବିଭିନ୍ନ ନେତା ଆଉ ଅଫିସର ମାନଙ୍କ ପାଖକୁ ପଠେଇ ଦେଇ ତମେ ପ୍ରମୋଶନ ପାଇଚ···

...ଭଲ ଭଲ ପୋଷ୍ଟ୍‌ରେ ରହିଚ ! ଆଜି ଯେତିକି ସଂପତ୍ତି ତମେ କରିଚ ସବୁ କରିଚି ଏଇ ଦେହଟା ?

ସଂଜୟ ॥ ତା' ବୋଲି ଏ ବୟସରେ ତମେ ବେଶ୍ୟାଗିରି କରିବ ?

ମନିକା ॥ ତମେ ଯେତେବେଳେ ତମର ପାଓ୍ୱାରକୁ ନେଇ ବେଶ୍ୟାଗିରି କରିଚ, ମୁଁ ତ କେବେ କିଛି କହିନି ? ଆଜି ବିଜୟକୁ ଏଇଠି ଦେଖି ଈର୍ଷାରେ ଏମିତି ଜଳିଯିବାର କାରଣ କ'ଣ ? ବିଜୟ ଆଜି ମତେ ଯୋଉ ଉପହାର ଦେଇଚି ତମ ସାରା ଜୀବନର ରୋଜଗାରରେ ତାହା ସଂଭବ ନୁହେ ।

ସଂଜୟ ॥ (ନେର୍ଭସ ହୋଇ) କ'ଣ ଦେଇଛି ?

ମନିକା ॥ (ହାତରେ ଧରିଥିବା ଛୋଟିଆ ବାକ୍ସ ଖୋଲି) ଏଇ ହୀରର ହାରଟା !

ସଂଜୟ ॥ ହୀର ?

[ ସଂଜୟ ଦେଖୁଚି କାବା ହୋଇ । ଆଲୁଅ ଲିଭିଲା । ପୁନର୍ବାର ଆଲୋକ ଆସିଲା ମଞ୍ଚର ଡ଼ାହାଣପଟେ ନିଶିକାନ୍ତଙ୍କ ଘରେ । ଆଲୋକ ଗୁମ୍ଫିକୃତ ହୋଇ ପଡ଼ିଛି ଉମାଙ୍କ ମୁହଁରେ । ହାତ ଦୁଇଟି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା ରତ ]

ଉମା ॥ ତମକୁ ମୁଁ ହୀରର ସିଂହାସନ ମାଗିନାହିଁ ପ୍ରଭୁ ! ଘିଅ ଦୁଧ ସର ଲବଣୀରେ ଭସେଇ ଦେବାକୁ କେବେ ପ୍ରାର୍ଥନା କରିନି । ହେଲେ ସାନପୁଅଟା ମୋର ବେମାର ପଡ଼ିଚି କୋଡ଼ିଏ ଦିନ ହେଲା...ତାକୁ ମୁଁ କ୍ଷୀର ଗିଲାସେ କି ଫଳରସ ଟିକିଏ ଦେଇ ପାରୁନି...ଯୋଉ ଆଇ. ଏ. ଏସ୍. ଅଫିସର ଯାଙ୍କୁ ଏ ଅବସ୍ଥା କରିଚି, ତା' ପରିବାର ଧ୍ୱଂସ ହେଇଯାଉ ପ୍ରଭୁ ! ତାକୁ ଧ୍ୱଂସ କରିଦିଅ !

[ ବାବୁ ଚାଲିଆସିଚି । ରୁଗ୍‌ଣ ଓ କ୍ଷୀଣ ଶରୀର । ଭଲ ଭବରେ କଥା ମଧ୍ୟ କହିପାରୁ ନାହିଁ । ]

ବାବୁ ॥ ବୋଉ ! ବୋଉ !

ଉମା ॥ ଆରେ ! ବାବୁ ! ଉଠି ଆସିଲୁ କାହିଁକି ?

ବାବୁ ॥ ମତେ ଭଖ ଲେକ ।

ଉମା ॥ ଶୋଇପଡ଼ ।

ବାବୁ ॥ ଶୋଇଲେ ସେ ଘରେ ଡରମାଡ଼ୁଚି !

ଉମା ॥ ଡ଼ର କ'ଣ ?

ବାବୁ ॥ ସେ ଭୟଙ୍କର ଲୋକଗୁଡ଼ାକ ମତେ ଖାଲି ଟାଣୁଛନ୍ତି ବୋଉ ।

ଉମା ॥ ଛି ! ପାପ କଥା ସବୁ ମୁଣ୍ଡକୁ ଆଣେନି । ମୁଁ ପଡ଼ିଶା ଘରୁ ପଚାଶ ଟଙ୍କା ଧାର ଆଣି ତାଙ୍କ ପୁଅକୁ ପଠେଇଚି...କ୍ଷୀର ପ୍ୟାକେଟ୍‌ଟେ ଆଣିଦେଲେ ତୁ' ଆମର ପିଇଦେଇ ଶୋଇ ପଡ଼ିବୁ ଯେ ଆଉ ସ୍ୱପ୍ନ ହବନି !

ବାବୁ ॥ ମତେ ସେମାନେ ମାରିଦେବେ ବୋଉ ! ଭାଇ ଗଲେ କୁଆଡ଼େ ?

ଉମା ॥ ତୁର ଭାଇକୁ ସେମାନେ ପୋଲିସ୍‌ରେ ଦେଇ ଦେବେ କହୁଥିଲେ ରେ ବାବୁ ! ଆଜି କାଲି ଅନ୍ୟାୟ ବିରୁଦ୍ଧରେ ଯିଏ ପାଟି ଫିଟେଇଲା ତା' ଉପରେ ସବୁ ପ୍ରକାର ଅତ୍ୟାଚାର କରା ହଉଚି ।

ବାବୁ ॥ କାହିଁକି ବୋଉ ?

ଉମା ॥ ଗାନ୍ଧୀ ନେହୁରୁ ବିନୋବାମାନେ ସବୁ ମରିଗଲେଣିରେ ବାବୁ ! ପଚାଶବର୍ଷ ହେଲା ଦେଶଟା ଆଇ. ଏ. ଏସ୍. ମାନଙ୍କ ହାତରେ ପଡ଼ିଯାଇଚି... ସେଗୁଡ଼ାକ ଚେଙ୍ଗିଜ୍ ଖାଁ ମାନଙ୍କଠୁ ବି ଆହୁରି ଭୟଙ୍କର...ହଉଚନ୍ତି ଇଂରେଜୀ ସିପେଇ ମାନଙ୍କ ପରି···ଲକ୍ଷ ଲକ୍ଷ ଟଙ୍କା ଖାଇ ଯାଉଛନ୍ତି ଆଉ ପାଟି ଫିଟେଇଲେ ପୋଲିସ୍ ଗୁଣ୍ଡା !

[ ହଠାତ୍ ପ୍ରବେଶ କଲା ରୁବି । ଶାଢ଼ି ପିନ୍ଧିଛି । ମୁହଁରେ ଗଗଲ୍‌ସ୍ । ବୋଧେ କାର ଚଲେଇ ନିଜେ ଆସିଚି ]

ରୁବି ॥ ମାଉସୀ, ନମସ୍କାର !

ଉମା ॥ ଆପଣ ?

ରୁବି ॥ ମୁଁ ରୁବି ଦାସବର୍ମା ! ସଞ୍ଜୟ ଦାସବର୍ମାଙ୍କ ଝିଅ···ମତେ ଚିହ୍ନି ପାରୁନାହାନ୍ତି ମାଉସୀ ! ପିଲାଦିନଟା ନୟାଗଡ଼ରେ ଆପଣଙ୍କ ଘରେ କଟିଚି ।

ଉମା ॥ ଓ ! ତୁ···ତୁ' ସେଇ ରୁବି ? ଚିହ୍ନିଲି, ଚିହ୍ନିଲି । କୁଆଡ଼େ ଆସିଥିଲୁ ମା' ?

ରୁବି ॥ (ପାଦ ଛୁଇଁ ପ୍ରଣାମ କଲା) ସାର୍‌ଙ୍କ ସାଙ୍ଗରେ ଦେଖା କରିବାକୁ । ଗୋଟାଏ ଜରୁରୀ କାମ ଥିଲା !

ଉମା ॥ ଚାକିରୀରୁ ସସ୍‌ପେଣ୍ଡ୍ ହେଲାପରେ ତୋ' ସାର୍‌ଙ୍କ ଅବସ୍ଥା ପାଗଳପରି ଲୋ' ମା' ! କାହାକୁ ଆଉ କହିବି ? ସବୁ ତ ତୋରି ବାପା କରିଚି !

ରୁବି ॥ ମୁଁ ସବୁ ଜାଣେ ମାଉସୀ ! ଘରେ ଆମର ଯୋଉ ଟ୍ୟୁସନ୍‌ଟା କରୁଥିଲେ ସେଇଟା ବି ବାପା ବନ୍ଦ କରି ଦେଇଛନ୍ତି । ମୁଁ ସାର୍‌ଙ୍କୁ ମନା କରିଦେଇଥିଲି ମାଉସୀ ! ଆମ ଘରକୁ ଆସି ବାପା—ମା'ଙ୍କ ଠାରୁ ଅପମାନ ପାଇବା ଅପେକ୍ଷା ସେଇଠିକି ଯିବା ଦରକାର ନାହିଁ ବୋଲି କହିଥିଲି ।

ଉମା ।। କିନ୍ତୁ ମା' ! ଏଣେ ଘରଟା ଯେ ଅଚଳ । ସାନ ପୁଅଟାକୁ କୋଡ଼ିଏ ଦିନ ହେଲା ବେମାର ଯେ ନା ଔଷଧ ଟିକିଏ ଦେଇ ପାରୁଚି ନା ଖାଇବାକୁ !

ରୁବି ।। ସୁରଭାଇ ?

ଉମା ।। ସୁରର ଦେଖା ନାହିଁ ! କିଏ କହୁଚି ପୋଲିସ୍ ତାକୁ ବାନ୍ଧିନେଇଗଲା... ଆଉ କିଏ କହୁଚି ସୂତାକଲ ଷ୍ଟ୍ରାଇକ୍‌ରେ ବ୍ୟସ୍ତ ଅଛି ।

ରୁବି ।। ସାର୍ ବି ନାହାନ୍ତି ?

ଉମା ।। ସାର୍ ମୁଠାଏ ପଖାଳ ଖାଇ କୁଆଡ଼େ ପାଗଳ ଭଳି ବୁଲୁଛନ୍ତି ଯେ ଏଯାଏଁ ତାଙ୍କର ଦେଖାନାହିଁ !

ରୁବି ।। ହଉ ! କିଛି ବ୍ୟସ୍ତ ହୁଅନ୍ତୁନି ମାଉସୀ ! (ବ୍ୟାଗ୍‌ରୁ ଟଙ୍କା ବାହାର କରି) ଏଇ ପାଞ୍ଚଶ' ଟଙ୍କା ରଖିଥାନ୍ତୁ...ସାର୍ ଆସିଲେ କହିଦେବେ—ରୁବି ଦେଇ ଯାଇଚି !

ଉମା ।। ଏ ଟଙ୍କା ତ ମୁଁ ନେଇ ପାରିବିନି ମା' ! ଘରେ ପୁଅ ବେମାର—ଡାକ୍ତର ଡାକିବାକୁ ପଇସା ନାହିଁ...ଘର ଅଚଳ...ତଥାପି ଏ ପଇସା ମୁଁ ନେଇ ପାରିବିନି...ଏ ପଇସା ନେଲେ ସ୍ୱାମୀଙ୍କର ଆଦର୍ଶ ନଷ୍ଟ ହେବ...ସୁର ଯଦି ଶୁଣେ...

ରୁବି ।। ସୁରଭାଇଙ୍କୁ ମୁଁ ବୁଝେଇଦେବି ମାଉସୀ ! ସାର୍‌ଙ୍କୁ ବି ମୁଁ କହିଥିଲି...ଟ୍ୟୁସନ ନ ପଢ଼େଇଲେ ବି ମାସକୁ ମାସ ମୁଁ ପାଞ୍ଚଶ' ଟଙ୍କା ଦେଇ ଯାଉଥିବି !

ଉମା ।। ତମ ସାର୍‌ଙ୍କର ସ୍ୱାଭିମାନଟା ବଡ଼ରେ ମା' ! ଟଙ୍କାଟା ନେଲେ ବାବୁର ଦେହ ଭଲ ହେଇଯାଇ ପାରେ...କିନ୍ତୁ ସେମାନଙ୍କ ଭିତରେ ଯୋଉ ଅଶାନ୍ତିର ନିଆଁ ଜଳିବ—ତା' ଭିତରେ ମୋ' ପରିବାରଟା ଜଳିଯାଇ ପାରେ ! ସେଇଥିପାଇଁ ରୁବି...

ରୁବି ।। କିନ୍ତୁ ମାଉସୀ ! ସାର୍‌ଙ୍କୁ ମୁଁ କଥା ଦେଇଥିଲି ।

ଉମା ।। ତା' ହେଲେ ମତେ କାହିଁକି ଦଉଚୁ ? ସାର୍‌ଙ୍କୁ ଦେ' !

ରୁବି ।। ହଉ ! ସାର୍‌ଙ୍କୁ ଅପେକ୍ଷା କରିବି । (ତଳେ ପଡ଼ିଥିବା ସୋଫାକୁ ଦେଖାଇ) ମୁଁ ସେଇଠି ଟିକିଏ ବସି ପାରିବି ମାଉସୀ !

ଉମା ।। ହଁ—ବସୁନ୍ତୁ !

[ ରୁବି ଯାଇ ମଞ୍ଚ ତଳର ସୋଫା ଉପରେ ଅପେକ୍ଷା କଲା । ]

ବାବୁ ।। ଘରେ ଟଙ୍କାବୋଲି କିଛି ନାହିଁ—ଅପା ଦଉଥିଲେ—ନେଲୁନି ବୋଉ ?

ଉମା　॥ ବାପା ଗାଳିଦେବେ ରେ...ମୁଁ କ'ଣ କରିବି କିଛି ଭବିପାରୁନି !

ବାବୁ　॥ ତା' ମାନେ...ମତେ ଭଲ କରିବା ପାଇଁ ତମର କାହାରି ଇଛା ନାହିଁ ବୋଉ ?

ଉମା　॥ (ବିକଳ ହୋଇ) ସେମିତି କହନାରେ ବାବୁ । ବାପାଙ୍କର ସାନପୁଅ ତୁ' ! କେତେ ଗେହ୍ଲା କରନ୍ତି ସିଏ ତତେ ! ଏମିତି କ'ଣ ସିଏ ତତେ ଭସେଇ ଦେବେ ? ସିଏ ଯାଇଛନ୍ତି ମାନେ ନିଶ୍ଚୟ ଟଙ୍କା ଯୋଗାଡ଼ କରି ଆସିବେ !

[ ଠିକ୍ ଏତିକି ବେଳେ ପଛପଟୁ ପ୍ରବେଶ କଲେ ନିଶିକାନ୍ତ । ମୁହଁରେ ଦାଢ଼ି ବଢ଼ିଛି, ଚେହେରାରେ କ୍ଲାନ୍ତି ]

ନିଶି　॥ ନା ! କୋଉଠି କିଛି ମିଳିଲା ନାହିଁ । ଏ ସମାଜ ଆଉ ଲୋକ ସବୁ ବଦଳି ଗଲେଣି ଉମା । ଆମ ସମୟରେ ଦୈନ୍ୟ ପ୍ରକାଶ କଲେ ସହାନୁଭୂତି ମିଳୁଥିଲା । ଆଜିକାଲି କାହାରି ହୃଦୟ ନାହିଁ, ତେଣୁ ଅନୁଭୂତି ମଧ୍ୟ ନାହିଁ । ସହ ଅନୁଭୂତି ଆସିବ କୋଉଠୁ

ବାବୁ　॥ ବାପା, ମୋ'ର ଦେହ ତା' ହେଲେ ଆଉ ଭଲ ହବ ନାଇଁ ବାପା ?

ନିଶି　॥ କ'ଣ କରିବିରେ ବାବୁ ! ବଡ଼ ଲୋକ ସାଙ୍ଗମାନେ ଆମକୁ ଆଉ ପଚାରୁ-ନାହାନ୍ତି ଉମା ! ସମସ୍ତଙ୍କୁ କହିଲି—କିଛି ଟଙ୍କା ଦେଇଥାଅ—ଟ୍ୟୁସନ କରି ଶୁଝିଦେବି । କେହି ରାଜି ହେଲେ ନାହିଁ ।

[ ରୁବି ତଳ ମଞ୍ଚରୁ ଉଠିଆସି ଉପର ମଞ୍ଚକୁ ପ୍ରବେଶ କଲା । ]

ରୁବି　॥ ସାର୍ ନମସ୍କାର !

ନିଶି　॥ ଆରେ ! ରୁବି ମା' ! ତୁ' କେତେବେଳୁ ?

ରୁବି　॥ (ଟଙ୍କା ବାହାର କରି) ଏଇ କେତେଟା ଟଙ୍କା ଆପଣ ରଖନ୍ତୁ । ମାଉସୀ ରଖୁନାହାନ୍ତି । ଏ ଟଙ୍କାରେ ଡାକ୍ତର ଡକେଇ ବାବୁକୁ ଭଲ କରନ୍ତୁ ସାର୍ ! ବାବୁକୁ ପିଲାଦିନେ ମୁଁ କେତେ କାଖେଇଛି—ସିଏ କ'ଣ ମୋର ଭାଇ ନୁହେ ! ନିଅନ୍ତୁ ସାର୍ !

ନିଶି　॥ (ଟଙ୍କା ନେଇ) ବହୁତ ବଡ଼ ଦୁଃସମୟରେ ଆସି ମତେ ବଞ୍ଚେଇ ଦେଲୁ ମା' ! (ଟଙ୍କା ଗଣି) ଆରେ ବାଃ ! ପାଞ୍ଚଶ' ଟଙ୍କା ! ତା' ମାନେ ବାବୁ ଆମର ନିଶ୍ଚୟ ଭଲ ହେଇଯିବ ।

ଉମା　॥ କିନ୍ତୁ ତା'ର ବାବା ତମର ସର୍ବନାଶ କରିଛି ବୋଲି ମନେ ଅଛିତ ?

ନିଶି　॥ ମତେ ବାଧା ଦିଅନାହିଁ ଉମା । ବିବେକର ତଣ୍ଟିଟାକୁ ଚିପି ଦିଅ...ନ୍ୟାୟ ଅନ୍ୟାୟର ନୈତିକ ବହିରୁ ସବୁ ପୃଷ୍ଠା ଚିରି ଦିଅ...ଆଦର୍ଶକୁ ଫୋପାଡ଼ି ଦିଅ ଡଷ୍ଟବିନ୍ ଭିତରକୁ ! ବଞ୍ଚିବାକୁ ହେଲେ ଏଗୁଡ଼ାକ ଅନାବଶ୍ୟକ !

[ ପ୍ରବେଶ କଲା ସ୍ମର ! ରକ୍ଷ ଚେହେରା ;
ନିଶିକାନ୍ତଙ୍କ ହାତରୁ ଟଙ୍କାଗୁଡ଼ାକ ନେଇ ]

ସ୍ମର ।। ଅନାବଶ୍ୟକ ନୁହେ ବାପା ! ଏବେ ବି ଧର୍ମ ଅଛି । ଏବେ ବି ଭଗବାନ ଅଛନ୍ତି । ଏବେ ବି ସତ୍ୟ ଲୁଚି ରହିଚି । ଦିନେ ନା ଦିନେ ନ୍ୟାୟ ଅନ୍ୟାୟର ସଂଘର୍ଷ ଭିତରୁ ନ୍ୟାୟ ପ୍ରତିଷ୍ଠିତ ହେବ । ଏମାନଙ୍କର ଆର୍ଥିକ ସାହାଯ୍ୟକୁ ଭିତ୍ତିକରି ଆମର ବଞ୍ଚିବା ଦରକାର ନାହିଁ । ନିଅ ରୁବି—ଏ ଟଙ୍କାର ଅପମାନ ବାପା ସହ୍ୟ କରିପାରିବେ ନାହିଁ ।

ରୁବି ।। ସ୍ମର ଭାଇ !

ସ୍ମର ।। ଆଇ ଏମ୍ ସରି, ରୁବି !

ରୁବି ।। (ଛଳଛଳ ଆଖିରେ) ଟଙ୍କାଟା ଫେରେଇ ଦେଇ ତମେ କିଛି ଭଲ କରୁନା ସ୍ମର ଭାଇ !

ସ୍ମର ।। ମୋର ଭଲ କରିବା ଆଉ ଖରାପ କରିବା ସହିତ ତୋ'ର କୌଣସି ସମ୍ପର୍କ ନାହିଁ !

ରୁବି ।। ସମ୍ପର୍କ...ନାହିଁ ? ତମେ...ଏକଥା କହିପାରୁଚ...ସ୍ମର ଭାଇ ?

ସ୍ମର ।। ହିଁ ମୁଁ କହୁଚି ! ଏ ଟଙ୍କା ଆମର ଦରକାର ନାହିଁ !

[ ଆବହ ସଙ୍ଗୀତ ଗମ୍ଭୀର । ରୁବି ପ୍ରାୟ କାନ୍ଦ କାନ୍ଦ । ସେଇ ସଙ୍ଗୀତ ମଧ୍ୟରେ ଆସ୍ତେ ଆସ୍ତେ ସେ ମଞ୍ଚ ତଳକୁ ଆସିଲା ଓ ବଡ଼ ପାଟିରେ କାନ୍ଦିପକେଇ କହିଲା ]

ରୁବି ।। ହେ ଭଗବାନ ! ତମକୁ ସମସ୍ତେ ମଙ୍ଗଳମୟ ବୋଲି କୁହନ୍ତି...କେମିତି ଭଗବାନ ? ମତେ ଏମିତି ଫେରେଇ ଦେଇ ଏଇ ସରଳ, ଅସହାୟ ପିଲଟାର ତମେ କେଉଁ ମଙ୍ଗଳ କଲ ? ମୋ' ସାନ ଭାଇଟାକୁ ରକ୍ଷାକର ଭଗବାନ ! ତାକୁ ରକ୍ଷାକର !

[ ରୁବି ସୋଫା ଉପରେ ମୁଣ୍ଡପୋତି ବସିଲା । ]

ନିଶି ।। ରୁବି ମତେ କହିଥିଲା ସ୍ମର ! ମୁଁ ତାଙ୍କ ଘରେ ଟ୍ୟୁସନ ପଢ଼ାଏ କି ନ ପଢ଼ାଏ ସିଏ ମତେ ମାସକୁ ମାସ ଟଙ୍କା ଆଣି ଦେଇଯିବ !

ସ୍ମର ।। ଦରକାର ନାହିଁ ସେ ଟଙ୍କା !

ନିଶି ।। (ହସି) ଦରକାର ନାହିଁ କେମିତି ? (ପଛକୁ ଗୁହିଁ) ଯା—ମା'ଟାର ମନ ଦୁଃଖ ହେଇଥିବ ବୁଝେଇଦବୁ ଯା' !

[ ସ୍ବର ପଛକୁ ଗ୍ରହିଁ ଦେଖିଲା ତଳ ମଞ୍ଚରେ ଛବି ମୁଣ୍ଡପୋତି ବସିଛି । ସେ ଆସ୍ତେ ଆସ୍ତେ ପାହାଚ ଓହ୍ଳାଇ ତଳ୍ଳ ମଞ୍ଚକୁ ଆସିଲା । ଆବହ ସଙ୍ଗୀତ ଗଂଭୀର । କୋରସ୍ ହମିଂ ଦିଆଯାଇ ପାରେ । ]

ବାବୁ ।। ଟଙ୍କାଟା ତ ଫେରେଇଦେଲେ ! ମୁଁ ବର୍ତ୍ତମାନ କେମିତି ଭଲ ହେବି ବାପା ?

ନିଶି ।। ମୁଁ ଜାଣିନିରେ ଧନ ! କୋଉ ଜନ୍ମର କୋଉ ପାପ ପାଇଁ ଆଜି ମୁଁ ଏ ଆର୍ଥିକ ସଙ୍କଟ ଭୋଗୁଚି—ମୁଁ ବୁଝିପାରୁନି...ବୁଝିପାରୁନି ତୋ' ପାଇଁ ଦି' ଟୋପା ଔଷଧ ଆଣିବା ପାଇଁ ପଇସା ନାହିଁ କାହିଁକି !

ଉମା ।। ଆମର ଭାଗ୍ୟ ଉପରେ କିଏ ପଥର ଗ୍ରପି ଦେଇଚି—ଯେତେ ଚେଷ୍ଟା କଲେ ବି ସେ କପାଳର ଦୁଆର ଆଉ ଖୋଲୁନି !

[ ଆଗେଇଯାଇ ବାବୁକୁ କୁଣ୍ଢାଇ ଧରିଲେ ]

ତୁ' ଆମର ବ୍ୟସ୍ତ ହେ'ନାରେ ବାବୁ ! ମୁଁ ଯାଉଚି, ଦେଖୁଚି...ପଡ଼ିଶା ଘର ସେ ପିଲଟା ଗଲକି ନାହିଁ !

ବାବୁ ।। ଭଷ୍ମ ଭୋକ ହେଲଣି ବୋଉ ! ମୋ' ଗୋଡ଼ ହାତ ଆଉ ଗ୍ଲୁନି !

ଉମା ।। ଗ୍ରଲ ଟିକିଏ ଖଟରେ ଗଡ଼ି ପଡ଼ିବୁ ଗ୍ରଲ !

ନିଶି ।। ଗ୍ଲିଲୁ...ମୁଁ ଟିକିଏ ଟେମ୍ପରେଚର୍‌ଟା ଦେଖେ...କେତେ ଜର ଅଛି !

[ ବାବୁକୁ ନେଇ ନିଶି ଓ ଉମା ଉପର ମଞ୍ଚରେ ଭିତରକୁ ଗଲେ ଓ ଆଲୁଅ ଲିଭିଲା । ବର୍ତ୍ତମାନ ତଳ ମଞ୍ଚରେ ସ୍ବର ଏବଂ ଛବି ଉପରେ ଆଲୁଅ ]

ସ୍ବର ।। ମୁଁ ଟଙ୍କାଟା ଫେରେଇଦେଲି ବୋଲି ରାଗିଲୁ ଛବି ?

ଛବି ।। ଛବି ମରିଗ୍ଲଣି !

ସ୍ବର ।। ଦେଖ ଛବି ! ସ୍ବରଭାଇ ଉପରେ ଯେତେ ରାଗିଲେ ବି ସେ ତୋ'ର ବାପାଙ୍କୁ କ୍ଷମା ଦେଇପାରିବ ନାହିଁ ।

ଛବି ।। ବାପାଙ୍କ ପାଇଁ କେତେଥର ଆଉ ତମ ଗୋଡ଼ତଳେ ପଡ଼ିବି କହିଲ !

ସ୍ବର ।। ମୋ' ପାଖରେ କ୍ଷମା ମାଗିବା ତୋ'ର ଗୋଟାଏ ଭ୍ରାନ୍ତି ଛବି । ତୁ ଯେତେ ଚେଷ୍ଟା କଲେବି ତମ ଘରେ ମୋ' ସାଙ୍ଗରେ ତୋର ବାହାଘର କରେଇ ଦେବେନି ।

ରୁବି    ।। ସିଧା ସଳଖ କହୁନା ମୁଁ ତମକୁ ଭଲ ଲାଗୁନି ବୋଲି !

ସ୍ମର    ।। ଦେଖ ରୁବି ! ମୁଁ ତତେ ଭଲ ଲାଗୁନି ବୋଲି ତୋ'ର କହିଦେବା ଉଚିତ ।

ରୁବି    ।। କିଏ କହିଲା ?

ସ୍ମର    ।। ମୋ' ମୁହଁର ଏ ଦାଢ଼ି...ଏ ରକ୍ଷ ଚେହେରା...ମୋର ଏଇ ଧର୍ମଘଟ... ବିପ୍ଳବ...ଏଗୁଡ଼ା ତୋ' ଭଳି ଗୋଟେ ଅଲିଅଳୀ ଝିଅର ସ୍ୱପ୍ନ ଛାଇକା ନୁହେ !

ରୁବି    ।। ଆଉ କ'ଣ ଗୋଟେ ଫିଲ୍ମଷ୍ଟାର୍ ବାହାହେଇ ପଡ଼ନ୍ତି ?

ସ୍ମର    ।। ସେଇଟା ତ ମୁଁ କହିପାରିବିନି...ତେବେ ତୋର ବାବା ଯେମିତିକା ଲୋକ ନିଶ୍ଚୟ ଗୋଟାଏ ଫରେନ୍‌ରେ ଥିବା ଡାକ୍ତର ଯୋଗାଡ଼ କରୁଥିବେ ...କିଛି ନହେଲେ ଗୋଟେ କାର୍ ଚଢୁଥିବା ଆଇଏଡ଼୍-ଆଇ. ଏ. ଏସ୍.ର ଯୋଗାଡ଼ରେ ଥିବେ ! ଜାଣିଚୁ—ଏଇଠିକି ଆସିଚୁ ବୋଲି ଖବର ପାଇଲେ ତୋ' ଉପରେ କେମିତି ମାଡ଼ ହବ !

ରୁବି    ।। ମୁଁ ସେ ଗୁଡ଼ାକୁ ଖାତିର କରେନି ·ସ୍ମର ଭଇ ! ମୁଁ ପିଲଦିନୁ ହୃଦୟ ଦେଇ ତମକୁ ଭଲପାଏ...ତମେ ମତେ ଯେତେଥର ପ୍ରତ୍ୟାଖ୍ୟାନ କରୁଛ... ତମକୁ ପାଇବା ପାଇଁ ସେତେ ମନ ହଉଚି ମୋର ..

ସ୍ମର    ।। କାହିଁକି ? ଅନ୍ଧକାର ଭିତରେ ପୋଡ଼ିଜଳି ଯାଇଥିବା ମୁଁ ଗୋଟାଏ ଅନ୍ଧକାରର ଜୀବ ! ମୁଁ ତତେ ପ୍ରତ୍ୟାଖ୍ୟାନ କରୁଚି ବୋଲି ତୁ' ଯାହା କହୁଚୁ ରୁବି...ହୃଦୟଟା ମୋର ଏ ପର୍ଯ୍ୟନ୍ତ ପଥର ହେଇନି...ଅଭାବ ଆଉ ଅନଟନ ଭିତରେ ଯଦିବା ପଥର ହୋଇଯାଇଥାଏ, ତାହା ଭିତରେ କୋଉଠି ନିଶ୍ଚୟ ଲୁଚି ରହିଚି ଭଲ ପାଇବାର ପଦ୍ମଟିଏ !

ରୁବି    ।। ସ୍ମର ଭଇ ! ମୁଁ ସେତିକି ବିଶ୍ୱାସ ରଖିଚି ତମ ଉପରେ !

ସ୍ମର    ।। ବିଶ୍ୱାସ କର ! ମୋ' ଭଲପାଇବାରେ କୋଉଠି ଟିକିଏ ଲୋଭ ନାହିଁ... ଲାଳସା ନାହିଁ...କାମନା ବାସନାର ଗନ୍ଧ ନାହିଁ...ବରଂ ଅଛି ନୂଆକରି ବଞ୍ଚିବାର ସୂର୍ଯ୍ୟୋଦୟଟିଏ । ତାର ବି ରଙ୍ଗ ଲାଲ...ଠିକ୍ ତୋର ଅରୁଣ ରଙ୍ଗର ଶାଢ଼ିପରି...ଭାବିନେ'...ତୋର ଏ ଅରୁଣ ରଙ୍ଗର ସକାଳକୁ ଅପେକ୍ଷା କରିଥିବା ରତିଟିଏ ମୁଁ...ଆଉ ତୁ ମୋର ସକାଳର ସୂର୍ଯ୍ୟୋଦୟ !

ରୁବି    ।। ସ୍ମର ଭଇ !

[ ସ୍ମର ଛବିକୁ ଆଲିଙ୍ଗନ କରିଚି ଏବଂ ଛବି ମୁହଁ ଲୁଗ୍ଉଇଛି ସ୍ମର ଛାତିରେ । ଅନ୍ଧାର । ପୁଣିଥରେ ଆଲୋକ ଆସିଲ ଉପର ମଞ୍ଚର ବାମପଟେ ଅର୍ଥାତ୍ ସଞ୍ଜୟ ଦାସବର୍ମାଙ୍କ ଘରେ । ବର୍ତ୍ତମାନ ଗୋପାଳ ଝାଡ଼ୁ କରୁଚି ଆଉ ମନିକା ଚିହ୍ନାର କରୁଛନ୍ତି ]

ମନିକା ॥ ଷ୍ଟାଇକ୍ ! ଷ୍ଟାଇକ୍ ! ଧର୍ମଘଟ ! ମାସେ ହେଲ ଗୋଟେ ପାଲ ଚଳେଇଚି ସେ ଟୋକା !

ଗୋପାଳ ॥ କିନ୍ତୁ ଆମ ଗାଁରେ ଯୋଉ ପାଲ ହଉଚି ତା' ଗୀତ ଅଲଗା ଆଉ ତମ ସହର ଗାଁର ପାଲଗୀତ ଅଲଗା ମା' ! ଆମ ଗାଁ ପାଲରେ ଖୋଳ, ଝାଞ୍ଜ ବାଜୁଚି ଆଉ ତମର ଏ ସୂତାକଳ ପାଲରେ ବାଣ ଫୁଟୁଚି..

ମନିକା ॥ (ଯୋତ୍ରାପାର୍ଟି ଭିଲେନ୍ ପରି) ହାହାହାହାହା…ତୁ' ଠିକ୍ କହିଚୁ ଗୋପାଳ ! ତମ ଗାଁରେ ଯୋଉମାନେ ପାଲ କରନ୍ତି ସେମାନେ ମଣିଷ, ହେଲେ ସୂତାକଳର ପାଲବାଲ କହୁଛନ୍ତି ସେମାନେ ବାଘ !

ଗୋପାଳ ॥ ବାଘ ବୋଲି କିଏ କହିଲ ମା' ? ସ୍ମରବାବୁ ନା ସୁବ୍ରତ ବାବୁ !

ମନିକା ॥ ସିଏ ଯୋଉ ବାଘ ହଉ…ମୁଁ ସମସ୍ତଙ୍କୁ ଜାଲ ପକେଇ ଧରିବି ଆଉ ମନଇଚ୍ଛା ନଚେଇବି !

ଗୋପାଳ ॥ ବୁଝିଲେ ମା' ! ବାବୁ ସୂତାକଳର ଡିରେକ୍ଟର ନହେଇ ଆପଣ ହେବା କଥା ।

ମନିକା ॥ ତୋ' ବାବୁଙ୍କ ହାତରେ ଖଡ଼ା ବି ସିଝୁନିରେ...ସେଥିପାଇଁ ମତେ ତାଙ୍କ ଅଫିସ କଥାରେ ଗଳିପଶି ଜବରଦଖଲ କରିବାକୁ ପଡୁଛି । ଏ ! ତୁ' ସେ ସୁବ୍ରତକୁ ଖବର ଦେଲୁ କି ନାଇଁ ମୁଁ ଡାକିଚି ବୋଲି ?

ଗୋପାଳ ॥ ମୁଁ ଡାକି ଦେଇଚି ମା' ! କହିଲେ ଆସିବେ ବୋଲି !

ମନିକା ॥ ଆଉ ସ୍ମରକୁ ଡାକିନୁ ତ ?

ଗୋପାଳ ॥ ସ୍ମରବାବୁର ଦେଖା ପାଇଲି ନାହିଁ । କିଏ ଗୋଟେ କହିଲ ତା' ସାନ ଭଇ ଦେହ ଖରପ !

ମନିକା ॥ ଠିକ ଚିହ୍ନିଚୁ ତ…? ମାନେ… ସ୍ମର କିଏ ସୁବ୍ରତ କିଏ ଜାଣିଚୁ ତ ?

ଗୋପାଳ ॥ ମଲ ସୁବ୍ରତ ବାବୁ ଗୋରା ହେଇ ସୁନ୍ଦର ହେଇ ଚଉକସିଆ ଟୋକା ଆଉ ସ୍ମରବାବୁ ଦାଢ଼ିଆ ।

ମନିକା ॥ ଦି' ଜଣକ ଭିତରେ କିନ୍ତୁ ଖୁବ୍ ଦୋସ୍ତି । ପ୍ରଥମେ ତାଙ୍କର ଦୋସ୍ତି ଭଙ୍ଗିବାକୁ ପଡ଼ିବ...ଯେକୌଣସି ବାଟରେ ସେ ଦିଇଟାକୁ ଅଲଗା କରିବାକୁ ପଡ଼ିବ । ତା'ପରେ ପୋଷା ମନେଇବି ।

ଗୋପାଳ ।। ଗବୁକ ମାଡ଼ଦେବେ ?

ମନିକା ।। ନା, ଔଷଧ ଦରକାର ! ନିଶା...ଟିକିଏ ଟିକିଏ ଅଫିମ ଦେଇ ପକ୍ଷୀଙ୍କୁ ପୋଷା ମନେଇଲ ପରି ପ୍ରଥମେ ସୁବ୍ରତକୁ ପୋଷା ମନେଇବି । ତୋ' ବାବୁ ଯଦି ଆସନ୍ତି—ମୁଁ ନାହିଁ ବୋଲି ମନା କରିଦବୁ । ଆଜି ତ ଗଙ୍ଗା ଆଉ ରୁବି ତି' ଜଣ ଯାକ ନାହାନ୍ତି . ତେବେ ମୋ' ରୁମରେ ଆମ କଲେଜର ଗୋଟେ ଝିଅ ଆଣି ରଖିଛି ।

ଗୋପାଳ ।। ଠିକ୍ ଅଛି ମା' !

ମନିକା ।। ଦେଖିଲୁ...ସୁବ୍ରତ କି ନା' ! ❨ କଲିଂ ବେଲ୍ ବାଜିଲ ❩

❨ ଗୋପାଳ ଦରଜା ଖୋଲିଲ ଓ ପ୍ରବେଶ କଲ ସୁବ୍ରତ ❩

ସୁବ୍ରତ ।। ନମସ୍କାର ମାଡ଼ାମ୍ !

ମନିକା ।। ଆରେ ସୁବ୍ରତ ! ଆସ ଆସ ! ଅବସ୍ଥା କ'ଣ ? ଗୋପାଳ ! ତୁ' ଉପରକୁ ଯା' ! କାହାକୁ ଛାଡ଼ିବୁନି ।

ଗୋପାଳ ।। (ଯାଇଚି)

ସୁବ୍ରତ ।। ସାଙ୍ଘାତିକ ମାଡ଼ାମ୍...ମୁଁ ଏଇଠିକି ଆସୁଛି ବୋଲି ଜାଣିପାରି ସେମାନେ ମତେ ଦଳରୁ ବଏକଟ୍ କରିଛନ୍ତି !

ମନିକା ।। କିଏ ? ସୁର ନିଶ୍ଚୟ !

ସୁବ୍ରତ ।। ୟେସ୍ ମାଡ଼ାମ୍ ! ସେଇ ମାଷ୍ଟର ପୁଅ !

ମନିକା ।। କିନ୍ତୁ ଏଇଟା ତମ ପ୍ରତି ଘୋର ଅପମାନ ହେଲ !

ସୁବ୍ରତ ।। ନା ! ମୁଁ ଏ ଅପମାନ ସହ୍ୟ କରିପାରିବି ନାହିଁ । ମୁଁ ପ୍ରତିଶୋଧ ନେବି ।

ମନିକା ।। ଏକା ଏକା ଏତେବଡ଼ ଶ୍ରମିକ ଦଳ ଉପରେ କେମିତି ପ୍ରତିଶୋଧ ନବ ସୁବ୍ରତ । ସେଥିପାଇଁ ତମକୁ ସପୋଟ୍ କରିବାକୁ ଗୁଡ଼ାଏ ଲୋକ ଦରକାର !

ସୁବ୍ରତ ।। ଅଛନ୍ତି ମାଡ଼ାମ୍ ମୋ' ସପକ୍ଷରେ ବହୁତ ଶ୍ରମିକ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକ ବିଶ୍ୱାସ କରନ୍ତି ଗାନ୍ଧୀ ଓ ନେହରୁଙ୍କର ଅହିଂସାରେ । ଆଉ ଦଳେ ପେଟର ଭୋକ ସମ୍ଭାଳି ନପାରି ଷ୍ଟ୍ରାଇକ୍ ଭାଙ୍ଗିବାକୁ କହୁଛନ୍ତି !

ମନିକା ।। ସେମାନଙ୍କ ଭିତରୁ କିଛି ଲୋକଙ୍କୁ ମୋ' ପାଖକୁ ନେଇ ଆସ । ସେମାନଙ୍କର ଯାହା ଦରକାର ମୁଁ ଦେବି । ତମ ଡ଼ିରେକ୍ଟର କିନ୍ତୁ ଜାଣିପାରିବେ ନାହିଁ । ଯାହା କରିବି, ମୁଁ କରିବି ! ସେମାନଙ୍କ ପାଇଁ ଏଇଠି ସବୁ ଖୋଲା,

ପିଇବାକୁ ଚାହିଁଲେ କିଛି ବିଦେଶୀ ମଦ ମଗେଇଦବା । ଏମିତିକି ଆମ କଲେଜରୁ ଖୁନା, ଲିଲି, ବେବି, ମାମା ହେଇ ପାଞ୍ଚଦଶଟା ଝିଅ ମଧ୍ୟ ଆସିପାରିବେ, ତାଙ୍କୁ ନେଇ ଏଠି ନାଚକୁଦ, ମଜାମଜଲିସ୍ ମଧ୍ୟ କରିବା ପାଇଁ ମୁଁ ଏ ଘର ଛାଡ଼ିଦେବି—ହେଲା !

ସୁବ୍ରତ ।। ଭଲ ହବ ମାଡ଼ାମ୍ ! ବହୁତ ଦିନ ଅଶାନ୍ତି ଭିତରେ ରହି ରହି ସେମାନେ ବି ମନ ଫୁର୍ତ୍ତି କରିବାକୁ ଚାହୁଁଛନ୍ତି । ମୋର ତ ସେୟା ଇଚ୍ଛା ହେଉଚି ..

ମନିକା ।। ଆରେ ତୁମ ନିଜ ପାଇଁ ଜମାରୁ ଚିନ୍ତା କରନା ସୁବ୍ରତ । ତମେ ଯଦି ଏ ଷ୍ଟ୍ରାଇକ୍‌ଟା ଭାଙ୍ଗି ଦେଇ ପାରିବ, ତା' ହେଲେ ଗୋପୀନାଥପୁର ପାଖରେ ଆମର ଯୋଉ ଫାର୍ମ ହାଉସଟା ଅଛି...ସେଇଟା ତମର ରହିବା ପାଇଁ ପୂରପୂରି ଛାଡ଼ି ଦିଆଯିବ । ରହିବା, ପିଇବା, ଖାଇବା ଆଉ ମଜଲିସ୍ କରିବା ଖର୍ଚ୍ଚ କମ୍ପାନୀ ଦବ... ତା' ଛଡ଼ା ତମର ଦରମା ବଢ଼େଇ ଦଶ ହଜାର କରିଦିଆଯିବ !

ସୁବ୍ରତ ।। ବାସ୍ ! ଆଉ କିଛି ଦରକାର ନାହିଁ ମାଡ଼ାମ୍ ! ଏ ଷ୍ଟ୍ରାଇକ୍ ମୁଁ ନିଶ୍ଚୟ ଭାଙ୍ଗିବି ।

ମନିକା ।। ତା' ହେଲେ ମୁଁ ବାବୁଙ୍କୁ କହି ତମର ପ୍ରମୋଶନ କରେଇ ଦେବି !

[ କଲିଂ ବେଲ୍‌ଟିପିଲେ । ଗୋପାଳ ଓହ୍ଲେଇ ଆସିଲା ସିଡ଼ିଦେଇ । ସିଡ଼ିରେ ଅଧାବାଟ ହେଇଚି, ମନିକା କହିଲେ ]

ଗୋପାଳ କିଛି ଖାଇବା ଆଉ ଡ୍ରିଙ୍କ୍‌ସ୍ ନେଇ ଆ' !

ଗୋପାଳ ।। ସାଙ୍ଗେ ସାଙ୍ଗେ ଆଣୁଛି ମା' !

[ ଗୋପାଳ ଉପରକୁ ପୁଣି ଯାଇଚି ଓ ଆଲୁଅ କଟିଲା । ବର୍ତ୍ତମାନ ଆଲୁଅ ଆସିଲା ତଳ ମଞ୍ଚରେ । ବର୍ତ୍ତମାନ ପାଇଁ ତଳ ମଞ୍ଚଟି ମିଃ ସଞ୍ଜୟ ଦାସବର୍ମାଙ୍କ ଫାର୍ମ ହାଉସ ବୋଲି ଧରି ନିଆଯିବ । ପ୍ରବେଶ କଲେ ସଞ୍ଜୟ ଏବଂ ରୁବି ]

ସଞ୍ଜୟ ।। ଏଇଠିକି...ମାନେ ଏଇ ଫର୍ମ ହାଉସକୁ ମତେ କାହିଁକି ଆଣିଲୁ ମା' ?

ରୁବି ।। ତମ ସାଙ୍ଗରେ ଅନେକ ସିକ୍ରେଟ୍ କଥା ହବାର ଅଛି ବାପି...ଘରେ .. ମା' ଆଗରେ ଏଗୁଡ଼ା କହିବା ସମ୍ଭବ ନୁହେ । ତା' ଛଡ଼ା ସୂତାକଳ ଷ୍ଟ୍ରାଇକ୍ ହବା ଦିନଠୁ ତମେ ପୂରା mood off ରହୁଚ...

ସଞ୍ଜୟ ॥ ଗ୍ରାଣ୍ଡ ଆଡ୍ ପ୍ରେସର୍ ରେ ମା' ! ଏପଟେ ଶ୍ରମିକମାନଙ୍କର ଆନ୍ଦୋଳନ–ସେପଟେ ମନ୍ତ୍ରୀଙ୍କ ଆଡ୍ଭ୍ ପ୍ରେସର୍...ସେକ୍ରେଟାରୀ କହୁଛନ୍ତି ମୁଁ ଇନ୍-ଏଫିସିଏଣ୍ଟ...ଏ ଭିତରେ ମୁଁ କ'ଣ ବା କରିପାରିବି ଯଦି ନିଶିକାନ୍ତ ମାଷ୍ଟର ସି.ବି.ଆଇ ତଦନ୍ତଟା ଲଗେଇଦିଏ ଆମେ ଖୁବ୍ ହଇରାଣ ହବା ମା' !

ରୁବି ॥ ଭାରତ ସ୍ୱାଧୀନ ହବାର ଏଇ କୋଡ଼ିଏ ବର୍ଷ ଭିତରେ ଏୟା ହିଁ ଆମର ପରିଣତି ବାପି...ତମେ ..ଯୋଉମାନେ I. A. S. ପାଇଲ ଇଂରେଜ ICS ମାନଙ୍କ ପରି Powerକୁ ଜାବୁଡ଼ି ଧରି ବଞ୍ଚିଚ... ଆଉ ମାମୀ ତ ପୂରା ସାହେବାଣୀ ! ଜାଣିଚ...ତମେ ଟୁଅର୍‌ରେ ଗଲେ ବିଜୟ ଅଙ୍କଲ୍ ଘରକୁ ସବୁବେଳେ ଯାଉଛନ୍ତି ଆଉ ଖୁବ୍ ମୋଟା ଦରର ଉପହାର ଦଉଛନ୍ତି ବୋଲି ?

ସଞ୍ଜୟ ॥ ଜାଣେ ମା' ! ହେଲେ ତୁ' ବି ଜାଣିଚୁ ବୋଲି ମୁଁ ଜାଣିଥିଲି...

ରୁବି ॥ ମୁଁ ଜାଣିଚି ଅନେକ କିଛି...କିନ୍ତୁ ତମ ଆଗରେ କହିବାର ବୟସ ହୁଏତ ମୋର ହେଇନି ବାପି !

ସଞ୍ଜୟ ॥ No...No ! ବୟସ କ'ଣ ହେଇନି ? You are an adult child. M. A. ପାଶ୍ କରିଚୁ...ଇଂଲିଶ୍ ମିଡ଼ିଅମ୍‌ରେ ପଢ଼ିଚୁ...ଭାରତର ବିଭିନ୍ନ ବଡ଼ ସହରରେ ପଢ଼ିଚୁ ବୟସ କ'ଣ ହେଇନି ?

ରୁବି ॥ ତମେ ଆଉ ମାମି ମିଶି ସ୍ୱାଧୀନ ଭାରତରେ ମତେ ଆଧୁନିକା କରିବାକୁ ଯାଇ ଯାହା ଯାହା ସବୁ କରିଚ...ସେ ଗୁଡ଼ାକ ମୋ' ଉପରେ ବୋଝ ହେଇ ଝୁଲୁଚି ବାପି...ମତେ ଲାଗୁଚି...କ୍ରମଶଃ...ମୁଁ ମୋର ମାଟି ପାଣି ପବନରୁ ଦୂରେଇ ଯାଉଛି...ଦୂରେଇ ଯାଉଛି ସମାଜର ଅନ୍ୟମାନଙ୍କଠାରୁ ...ଏବଂ ମାମୀ ଯୋଉଠି ମୋର ବାହାଘର କରେଇବେ ବୋଲି ଲାଗିଛନ୍ତି ସେଇଠି ହୁଏତ ମୋର ଚଳିବା କଷ୍ଟ ହେଇପାରେ ।

ସଞ୍ଜୟ ॥ (ହସି) ଓ...ବୁଝିଲି...। ପ୍ରବ୍ଲେମଟା ସେଇଠି.. କିନ୍ତୁ ଚଳିବା କଷ୍ଟ ହବ କାହିଁକି ? ତୁ' ଆମର ଏକମାତ୍ର ଝିଅ...ତୋ' ପାଇଁ ଆମେ ଆମେରିକା ଫେରନ୍ତା ଡାକ୍ତର ଯୋଗାଡ଼ କରିପାରିଲୁ ନାହିଁ ବୋଲି ଭସେଇଦବୁ ତତେ ?

ରୁବି ॥ ଆମେରିକା ଫେରନ୍ତା ଡ଼ାକ୍ତରକୁ ବାହାହବା କିମ୍ବା ଆମେରିକା ଚାଲିଯିବା ଗୋଟେ ଆଧୁନିକ ଓଡ଼ିଆ ସ୍ୱପ୍ନ ହେଇପାରେ ବାପି ! ହେଲେ ଦେଶ ଛାଡ଼ିଯିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ । କିନ୍ତୁ ଦେଶରେ ରହିବି

ବୋଲି ମାମି ମତେ ସୁବ୍ରତ ସାଙ୍ଗରେ ବାହାକରେଇ ଦବାକୁ କଣ ବସିଲଣି ?

ସଞ୍ଜୟ ।। କାଇଁକି...ସୁବ୍ରତଟା ଦେଖିବାକୁ ସୁନ୍ଦର...ବର୍ତ୍ତମାନ ଓ. ଏ. ଏସ୍ ଟା ପାଇଗଲା ପରେ ତାକୁ ସୂତାକଳରେ ପୋଷ୍ଟିଂ କରଯାଇଛି...ବେଶ୍ ଦରମା...କ'ଣ ଅସୁବିଧା ?

ରୁବି ।। M. A. ପାଶ୍ କରିଥିଲା କପି କରି...ଓ. ଏ. ଏସ୍.ଟା ମାମି ଆଉ ତମେ ଧରାଧରି କରି କରେଇ ଦେଇଚ...ଆଉ ତମରି ଚେଷ୍ଟାରେ ସିଏ ସୂତାକଳର ମ୍ୟାନେଜର ଭଳି ହଉଚି...ଛ' ମାସ ତଳେ ପର ସିଏ ଷ୍ଟାଇକ୍‌ରେ ଯୋଗଦେଇଥିଲା...ହଠାତ୍ ନାଟକୀୟ ଭାବେ ତାକୁ ଗୋଟାଏ ସଫିଷ୍ଟିକେଟେଡ୍ ଲୋକ କଟେଇ ଦେଲେ ସିଏ କ'ଣ ମୋର ସ୍ୱାମୀ ହେବା ପାଇଁ ଉପଯୁକ୍ତ ହୋଇଯିବ ବାପି ?

ସଞ୍ଜୟ ।। କିନ୍ତୁ ମା' ତୋ'ର ସେୟା ଚାହୁଁଛନ୍ତି !

ରୁବି ।। ମୁଁ ଜାଣେ ମାମି ତାକୁ ଗୋପାଳ ହାତରେ ଘରକୁ ଡକେଇ, ଖାଇବାକୁ ଦେଇ ମୋ' ସାଙ୍ଗରେ Close ହବା ପାଇଁ ବହୁତ ସୁଯୋଗ ଦଉଛନ୍ତି... କିନ୍ତୁ ତମକୁ ମୁଁ ଜଣେଇ ଦବାକୁ ଚାହେଁ...ମୁଁ ଏଗୁଡ଼ାକୁ ଭୀଷଣ ଘୃଣା କରେ । ତମେ ତମ ବାଟରେ ବ୍ୟସ୍ତ ରହିଲା ବେଳେ ଘର ଭିତରେ ଯାବତୀୟ ଦୁର୍ନୀତି କରୁଚି ମାମି ! ଖାଲି, ଗାଡ଼ି, ଫେସନ ଆଉ ଅଳଙ୍କାର ଭିତରେ ନିଜକୁ ଗୋଟେ କଣ୍ଢେଇ କରି ରଖୁଚି; ଆଉ ଭାବୁଚି, ମୁଁ ବି ଗୋଟେ କଣ୍ଢେଇ ହେଇ ନାଚିବି ତା'ରି ହାତରେ !

ସଞ୍ଜୟ ।। ମତେ ଯେମିତି ନାଚିବାକୁ ପଡୁଚି...I don't know...May be ତତେବି ନାଚିବାକୁ ପଡ଼ିବ !

ରୁବି ।। ନା ବାପି ! ନା...ତା' ଆଗରୁ ତମେ ମୋ' ପାଇଁ ଟିକିଏ ବିଷ ଆଣିଦିଅ ବରଂ ! ତମେମାନେ କେହି ଜାଣେନା...ହେଲେ ମୁଁ ଜାଣେ...ସୁବ୍ରତ ପରି ଗୋଟାଏ ଲମ୍ପଟ ହାତରେ ନିଜକୁ ସମର୍ପଣ କରିଦେବା ମୋ' ପାଇଁ ଅପମୃତ୍ୟୁ ହବ ବାପି !

ସଞ୍ଜୟ ।। ମୁଁ ଜାଣେ ମା' ! ଓ. ଏ. ଏସ୍.ଟା ଦବାପାଇଁ ମୁଁ ହିଁ ଚେଷ୍ଟା କରିଛି ସତ...ହେଲେ ମୁଁ ସୁବ୍ରତର ଚରିତ୍ର ସମ୍ପର୍କରେ ଜାଣିଥିଲି ଏବଂ ଏକଥା ତୋ'ର ମାମିକୁ ମଧ୍ୟ କହିଥିଲି । ହେଲେ ମାମି ତୋ'ର କହିଲା—ପୁଅପିଲା —ଟିକିଏ ଡ୍ରିଙ୍କ୍ ନକଲେ—ଝିଅମାନଙ୍କ ସାଙ୍ଗରେ ଛେଡ଼୍‌ଛାଡ଼୍ ନକଲେ ମାଇଚିଆ ଭଳି ଲାଗିବ !

ରୁବି ।। କିଛି ଜାଣିନି ବୋଉ ! ଆଉ କିଛି ନଜାଣି ତା' ସାଙ୍ଗରେ ମୋତେ ଛନ୍ଦି ଦବାପାଇଁ ଚେଷ୍ଟା କରୁଚି !

ସଞ୍ଜୟ ।। (ହସିଲେ) ସୁବ୍ରତର ଏତେଗୁଡ଼ାଏ ପୁରୁଷ ଲକ୍ଷଣ ଅଛି ବୋଲି ତା' ସାଙ୍ଗରେ ତୋ'ର ବାହାଘର କରିବା ପାଇଁ ସିଏ ଜିଦ୍ କରୁଚି !

ରୁବି ।। ତା'ମାନେ ତମେ ମତେ ଏ ବଦ୍‌ମାସଟା ପାଖରୁ ବଞ୍ଚେଇ ପାରିବନି ବାପି ?

ସଞ୍ଜୟ ।। ପାରିବି ! ଗୋଟାଏ ବାଟ ଅଛି । ଯଦି ଲଜ୍ଜା ନକରି ତୁ' କହିବୁ କାହାକୁ ଭଲ ପାଉଚୁ···ଯଦି ଭଲ ପାଉଚୁ ମୁଁ ତା' ସାଙ୍ଗରେ ତୋ'ର ବାହାଘର ନିଶ୍ଚୟ କରିଦେବି !

ରୁବି ।। କିନ୍ତୁ ମୁଁ ଯାହାକୁ ଭଲ ପାଉଛି, ସିଏ ମତେ ଭଲ ପାଉଛି କି ନାହିଁ ମୁଁ ଜାଣିନି ବାପି । ସିଏ ବହୁତ ଗରିବ । ଦିଓଳି ଦି ମୁଠା ଖାଇବାକୁ ମଧ୍ୟ ମିଳୁନି ତାକୁ । ତେବେ ଯଦି କୋଉଦିନ ମୁଁ ଧନୀଘର ଝିଅ ବୋଲି ମତେ ଘୃଣା ନକରି ଭଲପାଏ, ତା'ହେଲେ ମୁଁ ତାକୁ ନିଶ୍ଚୟ ବାହା ହେବି । ଯଦି ଭଲ ନପାଏ—ମୁଁ ଜୀବନସାରା ଅପେକ୍ଷା କରିବି···ଅପେକ୍ଷା କରିବି ଅନ୍ଧାର ରାତିଟିଏ ଯେମିତି ସକାଳକୁ ଅପେକ୍ଷା କରେ···ସେମିତି । କିନ୍ତୁ ଅନ୍ୟ କାହାକୁ ମୁଁ ବାହାହେଇ ପାରିବିନି !

ସଞ୍ଜୟ ।। ବେଶ୍ ! ସେୟା ହବ ମା' ! ମୁଁ ତ ପୁଣି ଗରିବ ଘର ପୁଅ ଥିଲି···ମତେ ତ ପୁଣି ତୋ' ମା' ଧନୀ ଘରର ଝିଅ ହେଇ ବାହାହେଲ ! ତୋ' ବେଳକୁ ସେୟା ନହବ କାହିଁକି ?

ରୁବି ।। (କୁଣ୍ଢାଇ ଧରି) Thank you ବାପି ! Thank you very much ! ତମେ ଯଦି ଏତେ broad ହେଇପାରୁଛ ତା'ହେଲେ ତମ ସୂତାକଳର ସବୁ ସମସ୍ୟା ମୁଁ ସମାଧାନ କରିଦେବି···Yes···I'll settle all the problems !

ସଞ୍ଜୟ ।। That's wonderful ! ମୋ'ର ତୋ' ଉପରେ ବିଶ୍ୱାସ ଅଛି ମା' ! ଚାଲ···ଘରକୁ ଯିବା !

ରୁବି ।। ଘରକୁ ଯିବାକୁ ନା—ଜମା ଇଚ୍ଛା ହଉନି ବାପି !

ସଞ୍ଜୟ ।। ମାମିଟା ତୋ'ର ଜମାରୁ ତତେ ବୁଝିପାରୁନି ।

ରୁବି ।। ତମେ ଯଦି ଅନୁମତି ଦବ ବାପି—ମୁଁ ଏଇ ଫାର୍ମ ହାଉସରେ ଦି'ଚାରିଦିନ ରହି ଏଇଠି ପଢ଼ାପଢ଼ି କରିବି···M.A. ରେଜାଲଟ୍ ବାହାରିଲା ପରେ ନା···ମୁଁ କିଛି ପଢ଼ିନି···

ସଞ୍ଜୟ ।। ତୁ'ପରା Ph.D. କରିବୁ ! ବେଶ୍...ଏଇଠି ରହି ପଢ଼ାପଢ଼ି କର—କଲେଜରେ ସେ ପିଅନଟା ଭଲ ଗେଷ୍ଟେଇ କରେ...ତାକୁ ପଠେଇଦେବି ..ତୋ' ପାଇଁ ଗେଷ୍ଟେଇ କରିବ...ଏଇ ବଗିଚ୍ଚାରେ ତ ପରିବା ମିଳୁଚି—ପୋଖରୀରେ ମାଛ ଅଛି...ଆଉ କ'ଣ ଅସୁବିଧା ?

ରୁଚି ।। ଯଦି ସମ୍ଭବ...ସେ ପିଅନ ହାତରେ ଗୋଟେ ହରଲିକ୍ସ୍ ପଠେଇଦବ !

ସଞ୍ଜୟ ।। ତା'ହେଲେ ମୁଁ ଆସୁଛି ମା' !

[ ସଞ୍ଜୟ ଚାଲିଗଲେ । ସେଇଠି ଏକାନ୍ତ ଅବସ୍ଥାରେ ଠିଆହେଲା ରୁଚି । ଆଲୋକ କ୍ଷ୍ଣୁପିକୃତ ହେଲା ତା' ଉପରେ ]

ରୁଚି ।। ଘରେ ରହି ଗୋଟେ କୃତ୍ରିମତାର ମୁଖା ପିନ୍ଧିବା ଅପେକ୍ଷା ଏଇଠି ଟିକିଏ ମୁକ୍ତ ଜୀବନ ବିତେଇବା ଅନେକ ଭଲ ! ମାମି ଭବୁଚି, ସିଏ ବାପିଙ୍କୁ ଲୁଚେଇ ଯାହା ସବୁ କରୁଚି, ମୁଁ କିଛି ଜାଣିନି...ତା' ଆଖିରେ ମୁଁ କୁଆଡ଼େ ଗୋଟାଏ ଆଉଟ୍‌ଡ଼େଟେଡ୍ ଝିଅ...କାରଣ ମୋ' ମନର ପବିତ୍ର ଅନ୍ତଃସ୍ଥଳଟିକୁ ମୁଁ ପଇସା ଆଉ ପାଓ୍ୱାର୍‌ର ଅଳୀକ ସ୍ୱପ୍ନରେ ଭର୍ତ୍ତି କରିପାରୁନି...ତା'ଠୁ ଅନେକ ଭଲ ଏଇ ଫାର୍ମ ହାଉସ୍...ଏଇଠି ଅନ୍ତତଃ ଜୀବନ ସମ୍ପର୍କରେ ଭବିବା ପାଇଁ ସମୟ ମିଳିବ ।

[ ମଞ୍ଚର ଆଲୋକ ଲିଭିଲା ଏବଂ ପୁନରାୟ ଆସିଲା ମଞ୍ଚର ବାମପଟେ, ଅର୍ଥାତ୍ ସଞ୍ଜୟ ଦାସବର୍ମାଙ୍କ ଘରେ । ସେଇଠି ଠିଆ ହୋଇଛନ୍ତି ବିଜୟ ଏବଂ ମନିକା । ଉଭୟଙ୍କ ହାତରେ ମଦଗ୍ଲାସ । ]

ବିଜୟ ।। ସେଇଠୁ କ'ଣ କହିଲା ସଞ୍ଜୟ ?

ମନିକା ।। ତମ ସାଙ୍ଗରେ ମୁଁ ମଦ କାହିଁକି ପିଉଚି ବୋଲି ପାଟିତୁଣ୍ଡ କଲା...

ବିଜୟ ।। ତା'ପରେ ?

ମନିକା ।। ମୋ' ଉପରେ ପାଟିତୁଣ୍ଡ କଲେ ମୁଁ କ'ଣ ଛାଡ଼ିଦିବି ? ମୁଁ ବି ପାଟିକଲି । (ହସିଲା)

ବିଜୟ ।। ବଢେଇଲନି ଦି ଜାବୁଡ଼ା ! ଆଇ. ଏ. ଏସ୍. ଫୁଟାଣି ଦେଖେଇବା କଥା ଯଦି ସୂତାକଳରେ ଦେଖଉ...ଏଇଠି ନୁହେ !

ମନିକା ।। ଆରେ ମୁଁ କାହିଁକି ତାକୁ ମାରିବାକୁ ଯିବି ? ତମେ ଦେଇଥିବା ହୀରା ହାରଟା ଯେମିତି ଦେଖେଇ ଦେଇଚି ତା'ର ଫ୍ୟୁଜ୍ ଉଡ଼ିଗଲା ! (ହସିଲା)

ବିଜୟ ।। (ଖୁବ୍ ଜୋର୍‌ରେ ହସିଲା) ତା' ମାନେ ବର୍ତ୍ତମାନ ବୁଝିଲ ତ ମନିକା ? ଓଡ଼ିଶାକୁ ସେଣ୍ଟର୍‌ରୁ ଯେତେ ପଇସା ଆସୁଚି ଉନ୍ନତି କରିବା ପାଇଁ—ସବୁ ପଇସା ତମ ଆଇ. ଏ. ଏସ୍ ସ୍ୱାମୀ ମାରିଦେଲେ ମଧ୍ୟ ତମ ପାଇଁ ହାରହାରଟିଏ କିଣିବା ପାଇଁ ତା' ପାଖରେ ପଇସା ନଥିବ··· ଅଥଚ ଏଇ ତମର ହତଭଗ୍ୟ ପ୍ରେମିକ ବିଜୟ ମହାନ୍ତି ତମକୁ କୋଉ କଲେଜ ବେଳରୁ ଭଲପାଇ ଆସୁଚି ପ୍ରଜାପତି ପରି···ତମ ପଦ୍ମଫୁଲ ଉପରେ ବସି ମଧୁପାନ କରୁ କରୁ ବନ୍ଦୀ ହୋଇଯାଇଚି କେଶର ଉପରେ !

ମନିକା ।। ତମେ ଆଜି ଏଇଠି ବନ୍ଦୀ ହେବାକୁ ଆସିଚ ନା ମଦ ପିଇସାରି ଯିବ ? What's your programme ?

ବିଜୟ ।। ଭ୍ରମର ଆଉ ପ୍ରଜାପତି ମାନଙ୍କର ପ୍ରୋଗ୍ରାମ୍, ଫୁଲ ଆଉ ପାଖୁଡ଼ା ମାନଙ୍କ ଫୁଟିବାର ଇଛା ସମୟ ଉପରେ ନିର୍ଭର କରେ ଡ଼ାର୍ଲିଂ ! As you wish !

ମନିକା ।। ସଞ୍ଜୟ ଆଜି ଟୁଅର୍‌ରେ ନାହିଁ । ଏଇଠି କୋଉଠି ଅଛି...ରୁବି କି ନେଇ ବୁଲିବାକୁ ଯାଇଛି ।

ବିଜୟ ।। ଏଇନା ଫେରିପାରେ-ତା' ମାନେ ସିଏ ଆସିବା ଆଗରୁ ମୁଁ ଏଇଠୁ ଚାଲିଯିବା ଦରକାର ! Or else···

ମନିକା ।। Or else ?

ବିଜୟ ।। Or else you can come with me ! ଯିବ ?

ମନିକା ।। ସିଓର୍ !

ବିଜୟ ।। ଫେରୁ ଫେରୁ ରାତି ବାର ସେପଟେ ! ତମ ସ୍ୱାମୀ କିଛି କହିଲେ ମୁଁ ମୋତେ ଦାୟୀ ହେବିନି କିନ୍ତୁ ! Okay ?

ମନିକା ।। ଓ—କେ ! Hell with Sanjay...ପଇସା ପାଇଁ ସିଏ ମତେ ଯାହା ଇଛା ତାହା କରିବାକୁ ଯଦି କହି ପାରୁଛି, ତା'ର ମନ ଜଗି ଚଳିବା ହୁଏତ ମୋ' ପାଇଁ ସମ୍ଭବ ନୁହେ । (ପାଟିକରି) ଗୋପାଳ ! ଗୋପାଳ !

[ ଗୋପାଳ ଉପରୁ ଓହ୍ଲାଇ ସିଡ଼ି ମଝିରେ ଥାଇ ପଚାରିଲା ଖପ୍ପ ଖପ୍ପ ]

ଗୋପାଳ ।। ଆଉ ନାଲିପାଣି ଆଣିବି ମା' ? ବାବୁ ରୁବି ଦେଇକୁ ନେଇ ବାହାରକୁ ଯାଇଛନ୍ତି ଆଉ ରଜାବାବୁ କ୍ରିକେଟ୍ ଖେଳିବାକୁ...ନାଲିପାଣି ଆଣିବି ?

ମନିକା ।। ନାଲିପାଣି କ'ଣ କହୁଚୁ...ଏଣିକି କହିବୁ ସ୍ୱବର୍ଣ୍ଣ ଜଳ ! ହେଲା ? ମୁଁ ଟିକିଏ ବାହାରକୁ ଯାଉଛି । ଫେରୁ ଫେରୁ ଡେରି ହବ...ବାବୁ ତୋର ଫେରିଲେ ଖାଇବାକୁ ଦେଇଦବୁ । ଯା' ! ଆସ ବିଜୟ !

ଗୋପାଳ ।। ଠିକ୍ ଅଛି ମା' ! ସ୍ୱର୍ଣ୍ଣ ଜଳ !

[ ମନିକା ବିଜୟକୁ ନେଇ ପଛପଟ ସିଡ଼ିରେ ଓହ୍ଲେଇଗଲା ବେଳେ ବାହାରୁ ଆସିଲା ଗଜା ]

ଗଜା ।। କୁଆଡ଼େ ବାହାରିଲ ମା' ! ଅଙ୍କଲ୍ ନମସ୍କାର !

ମନିକା ।। ମୁଁ ଫେରୁ ଫେର ଡେରି ହବ...ବାପାଙ୍କୁ କହିବୁ ନାଇଁ !

[ ଚାଲିଗଲେ । ଗଜା ମଞ୍ଚର ଉପରକୁ ପ୍ରବେଶ କଲା । ଗଜା ବର୍ତ୍ତମାନ ବଡ଼ ହେଇଯାଇଛି । ଜିନ୍ ଫୁଲପ୍ୟାଣ୍ଟ ଓ ଟିସାର୍ଟ ପିନ୍ଧିଛି । ହାତରେ କ୍ରିକେଟ୍ ବ୍ୟାଟ୍ ]

ଗଜା ।। (ମଞ୍ଚ ଉପରକୁ ଚଢ଼ି) ଗୋପାଳ !

ଗୋପାଳ ।। (ଟ୍ରେ' ରେ ବୋତଲ ଓ ବରଫ ଏବଂ ସୋଡ଼ା ନେଇ ଆସିଛି) ଆଜ୍ଞା ଗଜାବାବୁ !

ଗଜା ।। ଆଛା ଗୋପାଳ ! ମା' ମୁହଁରୁ କ'ଣ ମଦ ଗନ୍ଧ ଆସୁଥିଲା ! ମା' ମଦ ଖାଏ ?

ଗୋପାଳ ।। ଛି ଗଜାବାବୁ ! ମଦ ଶବଦଟା ଜମାରୁ ପାଟିରେ ଧରିବେନି !

ଗଜା ।। କାଇଁକି ?

ଗୋପାଳ ।। ନିଶା ଧରିନବ ! କହିବେ ସ୍ୱର୍ଣ୍ଣ ଜଳ ! ଆପଣଙ୍କ ବାପା ଭଲ ପାଆନ୍ତି ଗରମ ପାଣି...ମାନେ ଗ୍ୱ' ! ଆପଣ ଭଲ ପାଆନ୍ତି ଥଣ୍ଡା ପାଣି...ଆଉ ମା' ଭଲ ପାଆନ୍ତି ସ୍ୱର୍ଣ୍ଣ ଜଳ...ମାନେ ସୁନା ପାଣି...ସୁନାରଙ୍ଗର ପାଣି ପିଇବାକୁ ତାଙ୍କୁ ଭଲ ଲଗେ...ଇଂରେଜୀରେ ଆଉ ସୁନା ପାଣି କେହି ପିଉ ନାହାନ୍ତି ଗଜାବାବୁ...

ଗଜା ।। ଆଉ ?

ଗୋପାଳ ।। ଡ୍ରିଙ୍କ୍ କରୁଛନ୍ତି ।

ଗଜା ।। ଗୋପାଳ ! ମୁଁ ବି ଆଜି ସେଇ ସ୍ୱର୍ଣ୍ଣ ଜଳ ପିଇବି ! ଦେ' ମତେ ! (ଛଡ଼େଇ ନେଇଗଲା ବୋତଲଟା ଏବଂ ପିଇବାକୁ ଉଦ୍ୟତ ହେଲାବେଳେ)

ଗୋପାଳ ।। ନାଇଁ ଗଜାବାବୁ ! ତମେ ଏଇ ସ୍ୱର୍ଣ୍ଣ ଜଳର ବିଷ ପିଅନି···ଆଉ ମତେ କଥାଦିଅ କେବେ ବି ପିଇବ ନାଇଁ ଗଜାବାବୁ... ! ଏଗୁଡ଼ା ମଣିଷକୁ··· ନା-ଗଜାବାବୁ ! ତମକୁ ମୁଁ ପିଲଦିନରୁ ବଡ଼ କରିଚି...ଆଠବର୍ଷ ହେଇ-ଥିଲ ତମ ଘରକୁ ଆସିଲ ବେଳକୁ...ଯୋଉଦିନ ବାପା ଆଉ ମା' ନଈବଢ଼ିରେ ଭସିଗଲେ ମୁଁ ଏଇଠିକି ଆସି ତମ ଘରେ ସବୁ ପାଇଚି... ସାନଭଇ ପରି ଦେଖିଚି—ମୁଁ···ଏଇଘରେ ଥିଲଯାଏଁ ତମକୁ ତାଙ୍କ ଭିତରକୁ ଯିବାକୁ ଦେବିନି !

ଗଜା ।। ଆଚ୍ଛା ଗୋପାଳ ! ଗୋଟିଏ କଥା ପଚ୍ଚାରିବି, କହିବୁ ?

ଗୋପାଳ ।। କ'ଣ ଗଜାବାବୁ ?

ଗଜା ।। ବାପା ତ କ୍ରିକେଟ୍ ଖେଳୁ ନଥିଲେ ମୁଁ କାହିଁକି କ୍ରିକେଟ୍ ଖେଳୁଛି ?

ଗୋପାଳ ।। ତାଙ୍କବେଳେ କ୍ରିକେଟ୍ ଖେଳ ନଥିବ !

ଗଜା ।। ତା'ହେଲେ ବିଜୟ ଅଙ୍କଲ୍ ବାପାଙ୍କ ସାଙ୍ଗହେଇ କେମିତି କ୍ରିକେଟ୍ ଖେଳନ୍ତି ?

ଗୋପାଳ ।। ତାଙ୍କ କଥା କାଇଁକି ଭବୁଚ ଗଜାବାବୁ ? ବିଜୟବାବୁ ପୂରା ବାଡେଇ ଲୋକ । ସିଏ କ'ଣ ତମ ବାପାଙ୍କ ପରି ଏତେ ପାଠ ପଢ଼ିଛନ୍ତି ? ବେପାର କରି କୋଟି କୋଟି ଟଙ୍କା କମାଉଛନ୍ତି ଆଉ ମଦ ପିଉଛନ୍ତି !

ଗଜା ।। ଆଚ୍ଛା ମୋର କାଇଁକି ମଦ ପିଇବା ପାଇଁ ଇଚ୍ଛା ହେଉଚି ? ଜାଣିଚୁ ଗୋପାଳ...ମତେ ଅନେକ ସମୟରେ ଲଗେ ମୁଁ ଯେମିତି ବାପାଙ୍କ ପୁଅ ନୁହେ—ବିଜୟ ଅଙ୍କଲ୍‌ଙ୍କ ପୁଅ !

ଗୋପାଳ ।। ଛି ଛି ଛି ଗଜାବାବୁ ! ଏଗୁଡ଼ା ସବୁ ପାପ ଚିନ୍ତା ! ତମ ମୁଣ୍ଡକୁ ଏଚିନ୍ତା ସବୁ ଆସିଛି କେମିତି କେଜାଣି !

ଗଜା ।। (ରାଗ ଗୁପି) ଗୋପାଳ ! ଯାହା ପଚାରୁଚି, ତା'ର ଉତ୍ତର ଦେ' !

ଗୋପାଳ ।। କ'ଣ ପଚାରୁଚ ଯେ ?

ଗଜା ।। ପଚାରୁଚି ମୋ' ମୁହଁଟା ବିଜୟ ଅଙ୍କଲଙ୍କ ମୁହଁ ସାଙ୍ଗରେ ମିଶିଯାଉଛି କେମିତି ? ପଚାରୁଚି ରୁବି ଅପା ମୁହଁ ଆଉ ମୋ' ମୁହଁ ଭିତରେ ଏତେ ତଫାତ୍ ହେଲ କେମିତି ?

ଗୋପାଳ ।। କ'ଣ ହେଇଚି ତମର ଗଜାବାବୁ ?

ଗଜା ।। ଆଜି ଘରେ କେହି ନାହାନ୍ତି—ତୁ' ମତେ କହ ଗୋପାଳ ମୋର ଜନ୍ମ ରହସ୍ୟ କୋଉ ପାପର ପଙ୍କ ଭିତରେ ଅଛି ?

ଗୋପାଳ ।। ଜୋଉ ପାପ ସହିତ ତମର କୌଣସି ସଂପର୍କ ନାହିଁ ରଜାବାବୁ ! ତମେ ନିଷ୍ପାପ...ଠାକୁର ଘରେ ମୁଁ ଯୋଉ ଫୁଲ ଦଉଚି—ତମେ ତା' ଭଳି ପବିତ୍ର !

ରଜା ।। (ଗୋପାଳର ଗଳାକୁ ଚିପି) ଗୋପାଳ ! ସତକଥା କହିବୁ କି ନାହିଁ ?

ଗୋପାଳ ।। ଆଁ—ଆଁ...ରଜାବାବୁ !

ରଜା ।। (ଛାଡ଼ିନେଇ) ତା' ମାନେ ମୋ' ଜନ୍ମ ରହସ୍ୟ ତୁ' କହିବୁ ନାହିଁ ! ତା' ମାନେ ତୁ ସବୁ ଜାଣି ମତେ ଲୁଚେଇ ରଖିଚୁ ? ଠିକ୍ ଅଛି ! ଆଜି ମୁଁ ବିଷଖାଇ ଆତ୍ମହତ୍ୟା କରିବି !

ଗୋପାଳ ।। ରଜାବାବୁ !

ରଜା ।। ତୁ' ଦେଖିବୁ ଆଜି ରାତିରେ ମୁଁ ବିଷଖାଇ ଆତ୍ମହତ୍ୟା କରିବି । ଆଜି ରାତି ଭିତରେ ମା' ଯେତେବେଳେ ବିଜୟ ଅଙ୍କଲ୍‌କୁ ନେଇ ମଜା କରୁଥିବ, ମୁଁ ଏଇଠି ବିଷଖାଇ ମରିବି । ଆଜି ରାତି ଭିତରେ ତୁ' ଯଦି ନ କହିବୁ ମୋ' ବାପା କିଏ, ତା' ହେଲେ ମୁଁ ମଦ ପିଇବି—ବିଷ ପିଇବି—ନର୍କକୁ ଯିବି !

[ ହଠାତ୍ ଆଲୁଅର ଗୋଟିଏ ଅଲଗା ସ୍ପଟ୍ ନାଲିରଙ୍ଗ ହୋଇ ପଡ଼ିଲା ପଛପଟ ମଞ୍ଚର ସିଡ଼ି ଉପରେ । ସେଇଠି ଠିଆ ହୋଇଥିଲେ ସଞ୍ଜୟ ଦାସବର୍ମା । ]

ଗୋପାଳ ।। ନା, ରଜାବାବୁ ! ମୁଁ ତମକୁ ବିଷ ଖାଇବା ପାଇଁ ଦେବିନି । ମଦ ଖାଇବା ପାଇଁ ଦେବିନି । ମୁଁ ତମକୁ କହିବି ତମ ଜନ୍ମ ରହସ୍ୟ । ତମ ବାପା ସେତିକିବେଳେ ଦିଲ୍ଲୀରେ । ଛୁଟି ଦେଇକରୁ ଛୁଡିଦିଆ ଯାଇଥିଲା ନିଶିକାନ୍ତ ମାଷ୍ଟରଙ୍କ ଘରେ ଆଉ ବିଜୟବାବୁଙ୍କ ସାଙ୍ଗରେ ତମ ମା' ପ୍ରତିଦିନ ସୁବର୍ଣ୍ଣ ଜଳ ପିଉଥିଲେ । ତା' ପରେ କ'ଣ ହେଇଚି ମୁଁ କହିପାରିବିନି ।

ରଜା ।। ତୁ' କହିବା ପାଇଁ ବାଧ୍ୟ ।

ଗୋପାଳ ।। ଯାହା ମୁଁ ଦେଖିନି କେମିତି କହିବି ବାବୁ ? ଯଦି ମୁଁ କହିଦିଏ ତମେ ହଉଚ ବିଜୟବାବୁଙ୍କ ପୁଅ ତମେ ସହି ପାରିବତ ?

ରଜା ।। ଗୋପାଳ !

ଗୋପାଳ ।। ମୁଁ ଯାଉଚି ବାବୁ—ଏ ଗୁଡ଼ା ରଖିଦେଇ ଆସୁଚି, ବାବୁ ଯଦି ଆସିବେ—

ରଜା ।। ଆସ୍ତ ତୋ' ବାବୁ ! ସେଇଟା ଗୋଟାଏ ମାଇଚିଆ ! ଶଳା ସୂତାକଳ ମୂଲିଆ ମାନଙ୍କ ଆଗରେ ଫୁଟାଣି ଦେଖଉଚି—ଏଣେ ଘରେ ଯୋଉ ପଲିଟିକ୍‌ସ୍ କଳ ଚାଲିଛି ତାକୁ ଦେଖି ମଧ୍ୟ ଦେଖି ପାରୁନି !

[ ପୁଣିଥରେ ନାଲି ଆଲୁଅ ପଡ଼ିଲା ସଞ୍ଜୟ ଦାସ ବର୍ମାଙ୍କ ଉପରେ, ଆବହ ସଙ୍ଗୀତ ଗମ୍ଭୀର । ବର୍ତ୍ତମାନ ସେ ଧୀରେ ଧୀରେ ନାଲି ରଙ୍ଗର ପରିଧି ଡ଼େଇଁ ମଂଚ ଉପରକୁ ଆସିଲେ । ଖଣ୍ଡେ ସିଗାରେଟ ଲଗାଇଲେ । ଗୋପାଳ ଚାଲିଗଲା ପରେ ରଜା ନିଜ ଉପରେ ବିରକ୍ତ ହୋଇ କହିଲା । ]

ରଜା ।। କାମ୍ ଡ଼ାଉନ୍ କ୍ରିକେଟ୍ ପ୍ଲେୟାର୍ ରଜା ! କ୍ରିଜ୍‌ରେ ରହିବା ପାଇଁ ହେଲେ ଅନେକ ଧୈର୍ଯ୍ୟ ଦରକାର ! ଅନେକ ଧୈର୍ଯ୍ୟ !! Yes ..

[ ହସିଲା ଏବଂ ହସିହସି ଯାଇ ସୋଫା ଉପରେ ବସିଲା, ଆସ୍ତେ ଆସ୍ତେ ଆସିଲେ ସଞ୍ଜୟ ଦାସ ବର୍ମା । ଅସୀମ ଧୈର୍ଯ୍ୟର ମାଲିକ ଏବଂ ସବୁ କଥାକୁ ନିଜର ଚତୁରତା ଆଗରେ କ୍ଷୁଦ୍ର ମନେ କରୁଥିବା ଏହି ପ୍ରୌଢ଼ । ସେ ଯାଇ ରଜା କାଂଧରେ ହାତ ପକେଇଲେ । ହଠାତ୍ ଆବହ ସଙ୍ଗୀତରେ ଏକ ଚମକ୍ ଆସିଲା ଏବଂ ଚମକି ପଡ଼ିଲା ରଜା । ଚାହିଁଲା ଘରକୁ ଓ ଉଠି ଠିଆ ହେଲା । ]

ସଞ୍ଜୟ ।। ଏକେଲା ବସି ବୋର୍ ହଉଚୁ ?

ରଜା ।। ଯୋଉ ଘରେ ବାପା ଖାଲି ଅଫିସ କାମ କରନ୍ତି ଆଉ ମା' ମଦ ପିଇ ବିଜୟ ଅଂକଲ୍ ସଙ୍ଗରେ ହୋଟେଲ୍ ଯାଆନ୍ତି, ସେଇଠି ଏକମାତ୍ର ପୁଅ ବୋର୍ ହେଇ ମଦ ଖାଇବା କଥା । ବଜାରରୁ ବାଜେ ଫଟୋ କିଣି ଆଣି ଦେଖିବା କଥା...ମୁଁ ତ ସେଗୁଡ଼ା କରୁନି ବାପା ।

ସଞ୍ଜୟ ।। ଦି' ଦି' ବର୍ଷ ହେଲା ଫେଲ୍ ହେଇ ମୁଣ୍ଡରେ ଯେତେ ସବୁ ବାଜେ କଥା ହିଁ ଧରି ରଖିଚୁ ?

ରଜା ।। ତମକୁ ମୁଁ କେତେଥର କହିଲିଣି ବାପା—ଏ ଘରେ ରହି ମୁଁ ପାଠ ପଢ଼ି ପାରିବି ନାହିଁ । ମତେ ଦିଲ୍ଲୀ ପଠେଇ ଦେଉନି କାହିଁକି ?

ସଞ୍ଜୟ　॥ ଘରେ ରହି ଯିଏ ପାଠ ପଢ଼ି ପାରୁନି—ଦିଲ୍ଲୀ ଯାଇ ସେଇ ପିଲା ପାଠ ପଢ଼ିବ ବୋଲି କୋଉ ଗ୍ୟାରେଣ୍ଟି ?

ଗଜା　॥ ମାସକୁ ଟଙ୍କା ହଜାରେ ପଠେଇବାର ତାକତ୍ କ'ଣ ତମର ନାହିଁ ବାପା ? ଶ୍ରମିକ ମାନେ ତ କହୁଛଂତି ତମେ ଲକ୍ଷ ଲକ୍ଷ ଟଂକା ମାରୁଚ...ମତେ ହଜାରେଟା ଟଙ୍କା ଦବା ପାଇଁ ତମକୁ ବାଧୁଚି କାହିଁକି ?

ସଞ୍ଜୟ　॥ ଦେଖ ଗଜା—କଥାଟା ହଜାରେ ଟଙ୍କାରେ ନାହିଁ ।

ଗଜା　॥ ଆଉ ତା' ହେଲେ ? ମତେ ଦିଲ୍ଲୀ ପଠେଇ ଦଉନା କାହିଁକି ?

ସଞ୍ଜୟ　॥ ବର୍ତ୍ତମାନ ଭବୁଚି, ତୋ' ଭଳିଆ ପୁଅକୁ ଦିଲ୍ଲୀ ପଠେଇଦବା ଉଚିତ୍ ?

ଗଜା　॥ ନହେଲେ ଦେଖିବ ବାପା । ଏଇ ଗଜା...ପ୍ରତିଦିନ ସନ୍ଧ୍ୟାରେ ମଦ ଖାଇ ନ ହେଲେ ନିଶା ବଟିକା ଖାଇ ଘରକୁ ଫେରିବ ଆଉ ପ୍ରତିଦିନ ପାଞ୍ଚଶ' ଟଙ୍କା ମାଗିବ ପକେଟ ଖର୍ଚ୍ଚ ତା'ର ମା'କୁ......ମା' ଯଦି ନ ଦବ ତା' ହେଲେ ଏ ଘରେ ମହାଭାରତ ହବ ।

ସଞ୍ଜୟ　॥ ଏ ସବୁ କଲେ ଏଇ ଚ୍ଛୋଟିଆ ଶ୍ରମିକ ସହରରେ ମୋର ମାନ ରହିବ ତ ବାପା ?

ଗଜା　॥ ତମର ମାନ ଇଜ୍ଜତ ବୋଲି କିଛି ନାହିଁ ବାପା ! ଏଇଟା ତମେ ଜାଣିବା କଥା ! ଖାଲି ଗୁଡାଏ ପଇସା ଅଛି ଆଉ ଗୁଡ଼ାଏ ପାଓ୍ୱାର ଅଛି ବୋଲି ତମେ ଭବୁଚ......ହେଲେ ସୂତାକଳ ଶ୍ରମିକ ଧର୍ମଘଟ ତମର ମାନ ଇଜ୍ଜତ ନିଲାମ କରି ସାରିଲାଣି ବଜାରରେ । ଲୋକେ ତମକୁ ଯୋଉ ଭାଷାରେ ଶୋଧୁଛଂତି ସେଇଟା ଦିନକୁ ଦିନ ମୋ' ପାଇଁ ଅସହ୍ୟ ହେଇ ପଡ଼ିଲାଣି ବାପା ! ଆଉ ଘରକୁ ଆସିଲା ବେଳକୁ ଏଇଠି ଆଉ ଗୋଟାଏ ପ୍ରକାରର ଅପମାନ——ମା' ବସି ବିଜୟ ଅଂକଲ ସାଙ୍ଗରେ......

ସଞ୍ଜୟ　॥ ଗଜା !

ଗଜା　॥ ଘୃଣାରେ ମୁହଁଟା ତମର ସେ ପଟକୁ ବୁଲି ଯାଇ ପାରେ ବାପି...! ଆହୁରି ବେଶୀ ଘୃଣା ହେଲେ ଏଇ ଅଯୋଗ୍ୟ ଅଶ୍ଳୀଳ ପୁଅ ଗଜା ଗାଲରେ ଥାପଡ଼ ମାରି ତାକୁ କାବୁ କରିପାର ମଧ୍ୟ । କିଂତୁ ମୋର ଗୋଟିଏ ପ୍ରଶ୍ନ ବାପି......ଆଜି ତମକୁ ଏ ଘରେ ଏକଲା ପାଇ ମୁଁ ଏ ଗୁଡ଼ା ଗପୁଚି କାହିଁକି ? ଆଇ. ଏ. ଏସ୍. ଅଫିସରର ପୁଅ......ଏକ ମାତ୍ର ପୁଅ ଗଜା ଏତେ ଉଚ୍ଛୃଙ୍ଖଳିତ ହେଲା କାହିଁକି ? କୋଉ ସାହସରେ ଆଜି ତମ ଆଗରେ ଏତେ ବଡ଼ କଥା କହିଲା ?

ସଞ୍ଜୟ ॥ I am sorry ଗଙ୍ଗା ! ମୁଁ ତୋ'ର ମନର ଅବସ୍ଥା ବୁଝୁଚି...ବୁଝୁଚି ତୁ' ପାଠ ପଢ଼ିପାରୁନୁ କାହିଁକି...ବୁଝୁଚି ତୋ' ମନରେ ଏମିତି ବିପ୍ଳବର ଘୂର୍ଣ୍ଣିବାତ୍ୟାଟେ ଉଠୁଚି କାହିଁକି ? କହ—ଆଜି କେହି ନାହାନ୍ତି—ମନ ଖୋଲି କହ ମୁଁ ତୋ' ପାଇଁ କ'ଣ କରିପାରିବି ?

ଗଙ୍ଗା ॥ ପାରିବ ବାପି ? ପାରିବ ମା' ବିରୁଦ୍ଧରେ ସଂଗ୍ରାମ କରି ? ପାରିବ ସେଇ ବିଜୟ ମହାନ୍ତିକୁ ଘରୁ get out କରି ?

ସଞ୍ଜୟ ॥ ଗଙ୍ଗା !

ଗଙ୍ଗା ॥ ବାପି ! ଏ ସମାଜ ବିଜୟ ମହାନ୍ତିକୁ ନେଇ ଯେତେବଡ଼ କଳଙ୍କର ବୋଝ ମୋ' ମୁଣ୍ଡ ଉପରେ ଗୃପି ଦଉ ପଛକେ—ମୁଁ ଭାଙ୍ଗି ପଡ଼ିବି ନାହିଁ । କାହିଁକି ଜାଣ ବାପି··· । ମୁଁ ଜାଣେ···ହତାଶ ହେଇ ସୋଫା ଉପରେ ବସି ପଡ଼ିଲେ ତମେ ଅଛ ମୋ' କାନ୍ଧରେ ହାତ ପକେଇଦବା ପାଇଁ···ଆଉ ଘର ଭିତରେ ଅଶାନ୍ତି ହେଲେ ମୋର ରୁବି ଅପା ଅଛି ଆଖିରୁ ଲୁହ ପୋଛିଦବା ପାଇଁ !

ସଞ୍ଜୟ ॥ ଗଙ୍ଗା ! ତୁ' ଠିକ୍ କହୁଚୁ ଗଙ୍ଗା ! ହେଲେ ତୋ' ମା' କଥା ଭାବିଲେ ମତେ କାହିଁକି ନର୍ଭାସ ଲାଗୁଚି···ଲାଗୁଚି ମୁଁ ଯେମିତି ଗଉରକେଲା ଇସ୍ପାତ କାରଖାନାରୁ ଖଣ୍ଡେ ଉତ୍ତପ୍ତ ଲୁହା ଗିଳି ପକେଇଚି...ଲୁହାଟା ପେଟରେ ରହିଲେ ମତେ ଜାଳି ପକେଇବ ଆଉ ଯଦି ମୁଁ ତାକୁ ଛେପ ଭଳି ପକେଇ ଦିଏ, ଯୋଉଠି ପକେଇବି ସେହି ସ୍ଥାନଟା ଜଳି ପୋଡ଼ି ଛାରଖାର ହେଇଯିବ !

ଗଙ୍ଗା ॥ ତମେ ଏତେ ଆଉ ଚିନ୍ତା କରନି ବାପି ! କେହି ଯଦି ତମ ପାଖରେ ନଥାନ୍ତି, ତା'ହେଲେ ରୁବି ଅପା ଆଉ ମୁଁ ତମ ପାଖରେ ଅଛୁ ! ତମକୁ କିନ୍ତୁ ମା'ର ଏଇ ସ୍ୱେଚ୍ଛାଚାରିତା ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିବ ! ରୁବି ଅପା ପରା ତମ ସାଙ୍ଗରେ ଯାଇଥିଲା···ଗଲା କୁଆଡ଼େ ?

ସଞ୍ଜୟ ॥ ତା'ର ବି ସେଇ ଅବସ୍ଥାରେ ଗଙ୍ଗା ! ଏ ଘରେ ରହିଲେ ସିଏ ବି ଆଉ ପଢ଼ାପଢ଼ି କରିପାରୁନି । ସେଇଥିପାଇଁ ସିଏ ଫାର୍ମ୍ ହାଉସ୍‌ରେ ରହିଗଲା । ଆଉ ଟିକିଏ ପରେ କାହାକୁ ଗୋଟେ ପଠେଇବାକୁ ପଡ଼ିବ—ତା' ଖାଇବାଟା ନେଇ ଯିବ ।

ଗଙ୍ଗା ॥ ମା' ତ ଗଲା ବିଜୟ ଅଙ୍କଲ୍ ସାଙ୍ଗରେ । ଗଡିରେ ଫେରିବ କି ନା ଜଣା ନାହିଁ । ଗଲାବେଳେ ତା' ପାଟିରୁ ମଦଗନ୍ଧ ବାହାରୁଥିଲା । ଚାଲ ତା'ହେଲେ ଗୋପାଳକୁ କହିବା ତା' ପାଇଁ ଖାଇବା ଦେଇ ଆସିବ !

ସଞ୍ଜୟ ॥ That's right !

[ ସଞ୍ଜୟ ଓ ଗଡ଼ା ସିଡ଼ିଦେଇ ଉପରକୁ ଉଠିଲା-
ବେଳେ ଆଲୁଅ କଟିଲା ।
ଆଲୁଅ ଆସିଲା ତଳ ମଞ୍ଚରେ କିନ୍ତୁ ସେ ଆଲୁଅ
ସଫା ନାଟକୀୟ ଆଲୋକ ନୁହେଁ । କୌଣ
ଗୋଟେ ବଡ଼ ଝରକା କିମ୍ବା ଫାର୍ମ୍ ହାଉସ୍‌ର
ଅଗଣାରେ ଉଠିଥିବା ଆଶ୍ୱିନ ଜହ୍ନର ତୋଫା
ଅଥଚ ସ୍ନିଗ୍ଧ ଆଲୋକ । ତା'ରି ଭିତରେ
ମ୍ୟାଚିଙ୍ଗ୍ କଲଭଳି ସ୍ପଟ୍ ଆଲୋକ ଯଦି ପଡ଼ିବ
ରୁବିର ମୁହଁ ଉପରେ, ତା'ହେଲେ ଠିଆ
ହୋଇଥିବା ରୁବିର ମୁହଁଟା ସ୍ପଷ୍ଟ ହେବ । ]

ରୁବି ॥ ବିଚିତ୍ର ବେଦୁଇନ୍ ଜୀବନ ! ଗୋଟାଏ ସଭ୍ରାନ୍ତ ପୃଥିବୀର ଗ୍ରରିକାନ୍ଥ ଭିତରୁ ଖସି ଆସି ମୁଁ ଏଇଠି ଆଉ ଏକ ସୁନାର ହରିଣ ପଛରେ ଦୌଡ଼ୁଛି...ମତେ ଲାଗୁଚି...ବାପା ଆଉ ଗଡ଼ା ଭାଇର ଅସ୍ତିତ୍ୱ ସାଙ୍ଗରେ ଯାହା କିଛି ହୃଦୟର କୋମଳତା ରୁଛା ହୋଇ ରହିଥିଲା ସବୁ ରହିଗଲା ସେଇଠି; ଆଉ ମୁଁ... ଏଇଠି ବେଦୁଇନ୍ ଜହ୍ନ ପରି ଆଉ ଏକ ଆକାଶକୁ ଯିବାକୁ ଗ୍ରହୁଁଚି...ଇଚ୍ଛା ହଉଚି କବିତା ଲେଖିବାକୁ...ଝାଡ଼ନାଚ, ଧଇଁସଇଁ ଜୀବନର କବିତାଟିଏ... କବିତାଟି ଯଦି ସତରେ ଜୀବନ ପାଆନ୍ତା ପୃଥିବୀର ସବୁ ବାଟବଣା ମଣିଷ... ପୃଥିବୀର ସବୁ ଏକାକୀ ମଣିଷ ତମପରି ଏଇଠିକି ଗ୍ରଲି ଆସନ୍ତେ ସୁର ଭାଇ ! ତମେ ସିନା ମୋ ଉପରେ ଅଭିମାନ କରି ଭେକ ଉପାସରେ ଧର୍ମଘଟ କରୁଚ...ହେଲେ ଆଶ୍ୱିନର ଏଇ ଜହ୍ନକୁ ଦେଖିଲେ ତମକୁ ଆଉଥରେ ଡାକିବାକୁ ଇଚ୍ଛା ହଉଚି । ତମେ ଯଦି ସତରେ ଏଇଠିକି ଆସିପାରନ୍ତ ସୁରଭାଇ . ବିଶ୍ୱାସ କର...ମୁଁ ତମ ପାଇଁନା...ସବୁ ପୁରୁଣା ସ୍ମୃତି ଗୁଡ଼ାକୁ ଜୀବନ୍ତ କରିଦିଅନ୍ତି...ଆସ ସୁରଭାଇ ! ମତେ ଧନୀଘର ଝିଅ ବୋଲି ଯଦି ଧିକ୍‌କାର କରିବା କଥା—ଏଇଠିକି ଆସ...ଯଦି ଧକ୍‌କା ମାରିବା କଥା ଏଇଠିକି ଆସି ମାର ! ତମର ସେଇ ଚୂଡ଼ାନ୍ତ ଧକ୍‌କାରେ ମୁଁ ପୁଣିଥରେ ବଞ୍ଚିଯିବି !

[ ପ୍ରବେଶ କରିଚି ସୁବ୍ରତ । ମଦ୍ୟପାନ କରିଛି ।
ପାଦ ଟଳମଳ ହେଲପରି ମନେ ହେବ ]

ସୁବ୍ରତ ॥ ଆରେ ରୁବି ! ମୁଁ ସ୍ୱପ୍ନରେ ବି ଭାବିନଥିଲି ତମେ ଏଇ ସନ୍ଧ୍ୟାରେ...ମାନେ ଯା' କୁହନ୍ତି...ଏଇ ଜହ୍ନ ରାତିରେ ..ଏଇଠି...ଠିଆ ହୋଇଥିବ !

ଛବି ।। ମୁଁ ବି ଭବିନଥିଲି ସୁବ୍ରତ ! ତମେ ଗୋଟେ ଗୁଡ଼ ଖୋଜୁଥିବା କଦା ପରି ମତେ ଶୁଙ୍ଘି ଶୁଙ୍ଘି ଏଇଠିକି ଚାଲି ଆସିବ !

ସୁବ୍ରତ ।। ଅନେକ ଦିନ ହେଲା ତମ କଥା ଭବୁଥିଲି...ଆଜି ସନ୍ଧ୍ୟାରେ, ପୁଣି ଏଇ ନିର୍ଜନ ଫାର୍ମ ହାଉସ୍‌ରେ ତମ ସାଙ୍ଗରେ ଦେଖା ହେଇଯିବ ବୋଲି ମୁଁ ମୋଟେ ଆଶା କରିନଥିଲି ।

ଛବି ।। ମୁଁ କ'ଣ ଆଶା କରିଥିଲି ? ଦୁଃଖର କଥା, ଯୋଉଠି ବାଘ ଆସିବ ଠିକ୍ ସେଇ ଯାଗାରେ ହିଁ ସନ୍ଧ୍ୟା ହୁଏ ।

ସୁବ୍ରତ ।। ମାନେ ? ତମେ କ'ଣ କହିବାକୁ ଚାହୁଁଚ ?

ଛବି ।। ମାନେ...(ହସି) ମାନେ ମୁଁ ଆପଣଙ୍କ କଥା ଭବୁଥିଲି ତ...ଆପଣ ମଦଟା ପିଇ ବାଘ ଭଳିଆ ଚାଲି ଆସିଲେ ଏଇଠିକି ।

ସୁବ୍ରତ ।। ମଦଟା ପିଇଚି ନିଶ୍ଚୟ । କିନ୍ତୁ ତମେ ମତେ ଫାର୍ମ୍ ହାଉସରେ କାହିଁକି ମନେ ପକାଉଥିଲ—ମୁଁ ଜାଣିପାରୁନି...ଯଦି ମନେ ପକେଇବା କଥା ତା'ହେଲେ ତମ ମା'ଙ୍କ ସାଙ୍ଗରେ ମଦ ପିଇଲା ବେଳେ...ନହେଲେ ତମର ସେଇ ସମ୍ଭ୍ରାନ୍ତ ଡାଇନିଂ ଟେବୁଲ ଉପରେ...ନହେଲେ ତମର...

ଛବି ।। ବେଡ୍‌ରୁମ୍ ଭିତରେ ।

ସୁବ୍ରତ ।। ଓ୍ୱାଣ୍ଡରଫୁଲ୍ ! ଛବି...ଯୋଉଦିନ ଷ୍ଟାଇକ୍ ଭାଙ୍ଗିବା ପାଇଁ ତମ ମା' ମତେ ଡାକି ଆଦର କଲେ, ମଦ ପିଆଇଲେ ଆଉ ଚିକେନ୍ ପକୋଡ଼ା ଖାଇବାକୁ ଦେଲେ—ସେଦିନ ମତେ କହିଥିଲେ ଯେ ତମେ ମଝିରେ ଏଇ ଫାର୍ମ୍ ହାଉସ୍‌କୁ ଆସ...ଆଉ ଏଇଠି ତମ ସାଙ୍ଗରେ ମୋର ଦେଖାହେବା ଉଚିତ ।

ଛବି ।। ମା'ଟା ମୋ' ପାଇଁ ଭରି ଚିନ୍ତା କରେ ତ ? ସେଇଥିପାଇଁ କହିଲ ! ଆଉ କ'ଣ କହିଲା ?

ସୁବ୍ରତ ।। କହିଲେ...ମୋର ଯାହା ଚେହେରା ମୁଁ ତମଭଳି ଗୋଟାଏ ଝିଅକୁ ବାହା ହେବା କଥା !

ଛବି ।। ତମକୁ କାହିଁକି—ଯେ କୌଣସି ଦୁଇଗୋଡ଼ ଥିବା ପ୍ରାଣୀ ସହିତ ମୋର ବାହାଘରଟା କରେଇ ଦେବାକୁ ମା' ବ୍ୟସ୍ତ ହେଇପଡ଼ୁଚି । ତମକୁ ବି କହିଚି ନା କ'ଣ ?

ସୁବ୍ରତ ।। ନ କହିଥିଲେ ତମେ ଏଇଠି ଅଛ ବୋଲି ମୁଁ କେମିତି ଜାଣିଲି ?

ଛବି ।। ତମକୁ କହିଚି ତା'ହେଲେ ? କେବେ କହିଲା ?

ସୁବ୍ରତ ।। ତମେ ଜାଣିନା ?

ରୁବି ॥ ଜମା ଜାଣିନି ! କାହିଁକି ଏମିତି କହିଲ ଜାଣିଚ !

ସୁବ୍ରତ ॥ ବର୍ତ୍ତମାନ ମାଲ୍ ପିଇଥିଲେ ବି ଜାଣିପାରୁଚି ରୁବି— ! ତମ ମା'—ମତେ ଲଗେଇ ସୂତାକଳ ଷ୍ଟ୍ରାଇକ୍ ଭଙ୍ଗିବା ପାଇଁ ମସୁଧା କରି ତମକୁ ବାହା ହବାର ଲୋଭ ଦେଖେଇ ଥିଲେ । ଆଉ ଅନେକ କାମ ମୋ' ହାତରେ କରେଇ ନେଇଛନ୍ତି !

ରୁବି ॥ କ'ଣ କ'ଣ ସବୁ କଲ ମତେ ବାହାହବାର ଲୋଭଟା ସମ୍ଭାଳି ନପାରି ?

ସୁବ୍ରତ ॥ ମୁଁ ସୂତାକଳ ଶ୍ରମିକମାନଙ୍କ ସାଙ୍ଗରେ ବେଇମାନି କରିଚି···ଯୁଵ ସାଙ୍ଗରେ ବେଇମାନି କରି ଷ୍ଟ୍ରାଇକ୍ ଭଙ୍ଗି ଦେଇଚି । ତମରି ଲୋଭରେ ମୁଁ ବୋନସ୍ ମଧ୍ୟ କଟେଇ ଦେଇଚି ରୁବି···ଶ୍ରମିକମାନଙ୍କର ଏତେଦିନର ଷ୍ଟ୍ରାଇକ୍ ଭଙ୍ଗିଚି ।

ରୁବି ॥ କିନ୍ତୁ ତମେ ହିଁ ଷ୍ଟ୍ରାଇକ୍ କରି ଶ୍ରମିକ ପରିବାର ଗୁଡ଼ାକୁ ଭୋକ ଉପାସରେ ମାରିଚ···ତମକୁ ପରମବୀର ପଦବୀ ମିଳିବା କଥା ସୁବ୍ରତ । ଗତବର୍ଷ ଭାରତ ପାକିସ୍ଥାନ ଯୁଦ୍ଧରେ ସେନାବାହିନୀ ମଧ୍ୟ ଏମିତି ଏମିତି କାମ କରିନଥିବେ । ଯଦି ଡ଼ିରେକ୍ଟର୍‌ଙ୍କର ମୋ'ଭଳି ଜଣେ ସୁନ୍ଦରୀ ଝିଅ ଥାଏ, ତା'ହେଲେ ତମେ ନେତାମାନେ ଏମିତି ମେଣ୍ଢା ପାଲଟି ଯାଆନ୍ତି ବୋଲି ମା' ଠିକ୍ ଜାଣିଥିଲା । (ହସିଲେ)

ସୁବ୍ରତ ॥ ରୁବି !

ରୁବି ॥ ଛି ! ମୋ' ଭଳି ଗୋଟେ ସାଧାରଣ ଝିଅଟେ ପାଇଁ ଏତେଗୁଡ଼ାଏ ଶ୍ରମିକଙ୍କର ଘର ବୁଡ଼େଇବାକୁ ତମକୁ ଲଜ୍ଜା ଲାଗିଲା ନାହିଁ । ବିବେକ ତମକୁ ଆଘାତ କଲା ନାହିଁ ସୁବ୍ରତ ?

ସୁବ୍ରତ ॥ ତମେ ହୁଏତ ଜାଣିନା ରୁବି ! ତମ ମା' ଲଜ୍ଜା ଓ ବିବେକମାନଙ୍କର ସମସ୍ତ ବାଡ଼ ଭଙ୍ଗି ଅନ୍ୟପଟକୁ ଚାଲିଯାଇ ପାରନ୍ତି । ତମକୁ ମୋ' ହାତରେ ଟେକିଦେବେ ବୋଲି ବହୁତ ଥର ସେ ମତେ ଆଣିଛନ୍ତି ଏଇ ଫାର୍ମ ହାଉସ୍‌କୁ ! ମତେ ମଦ ଆଉ ମାଂସ ଖୁଆଇ ନାହାନ୍ତି— ମୋ ମାଂସପେଶୀ ମାନଙ୍କୁ ବ୍ୟବହାର କରିଛନ୍ତି ମଧ୍ୟ ! ହେଁ ହେଁ...

ରୁବି ॥ ଏଇ ଫାର୍ମ ହାଉସ୍‌ରେ ?

ସୁବ୍ରତ ॥ ବର୍ତ୍ତମାନ ଯଦି ତମକୁ ନେଇ ମୁଁ ଏଇଠି ଉପଭୋଗ କରେ ଆଉ ତମର ମା' ଆସି ପହଞ୍ଚି ଯାଇ ଆମକୁ ବେଡ୍‌ରୁମ୍‌ରେ ଦେଖନ୍ତି ସିଏ ବହୁତ ଖୁସି ହେଇଯିବେ । ତା'ହେଲେ ଚାଲ ରୁବି, ଆଜିର ଏଇ ଜହ୍ନରାତିଟାକୁ ଆମେ ଉପଭୋଗ କରିବା !

[ ହାତଧରି ଟାଣିଲା ]

ରୁବି ।। ଛାଡ଼ ମୋର ହାତ ! you rascal ! ଏତେ ସାହସ ତୋ'ର ! ମତେ ନେଇ ମୋ' ଫାର୍ମ ହାଉସ୍‌ରେ ଉପଭୋଗ କରିବୁ ?

ସୁବ୍ରତ ।। କ୍ଷତି କ'ଣ ! ଷ୍ଟ୍ରାଇକ୍ ଭାଙ୍ଗିଗଲାଣି...ଆଉ କିଛିଟା ଦିନ ପରେ ତମେ ମୋର ପତ୍ନୀ ହେବାକୁ ବାଧ୍ୟ ।

[ ରୁବିକୁ ଆଲିଙ୍ଗନ କଲା ଓ ରୁବି ଛଟପଟ ହେବା ଅବସ୍ଥାରେ ପ୍ରବେଶ କଲା ସୁର । ]

ସୁର ।। ସୁବ୍ରତ ! କ'ଣ ଚାଲିଛି ଏଠି !

ସୁବ୍ରତ ।। ଆବେ, ତୁ' କ'ଣ ଏଠି ! ପଳେଇ ଯା' ନେତା !

ରୁବି ।। ସୁରଭାଇ !

ସୁର ।। ରବିକୁ ଛାଡ଼ି ଦେ' ସୁବ୍ରତ ! ମୁଁ କହୁଚି ଛାଡ଼ି ଦେ' !

ସୁବ୍ରତ ।। ଛାଡ଼ିଦେବି ! ଡ଼ାଇରେକ୍ଟରଙ୍କର ସ୍ତ୍ରୀ ମନିକା ଦେବୀ ଖୋଦ୍ ମତେ ରୁବିର ଦାୟିତ୍ୱ ଦେଇଛନ୍ତି । ରୁବି ବର୍ତ୍ତମାନ ପାଇଁ ମୋର ।

ରୁବି ।। ବର୍ତ୍ତମାନ ପାଇଁ ନୁହେ କିମ୍ବା ଭବିଷ୍ୟତ ପାଇଁ ନୁହେ ରେ ସ୍କାଉଣ୍ଡ୍ରେଲ୍ ! ରୁବି ଅତୀତରେ ଥିଲା ସୁରଭାଇର ! ବର୍ତ୍ତମାନ ବି ସୁର ଭାଇର, ଆଉ ଭବିଷ୍ୟତରେ ରହିବ ସୁର ଭାଇର ହୋଇ ।

[ ରୁବି ନିଜକୁ ମୁକ୍ତ କରି ଚାଲି ଆସିଲା ସୁର ପାଖକୁ ]

ସୁବ୍ରତ ।। (କ୍ଷୁଧିତ ବ୍ୟାଘ୍ର ପରି) ସୁର ! ଛାଡ଼ି ଦେ' ତାକୁ, ନହେଲେ ତୋ' ଅବସ୍ଥା ମୁଁ ସାଂଘାତିକ କରିଦେବି କହୁଚି । ଏଇ ଝିଅଟା ପାଇଁ ମୁଁ ଷ୍ଟ୍ରାଇକ୍ ଭାଙ୍ଗିଛି । ଏଇ ଝିଅଟା ପାଇଁ ବର୍ତ୍ତମାନ ମୁଁ ତତେ ହତ୍ୟା କରିବି ।

ସୁର ।। ସୁବ୍ରତ ! ତୋ' ହତ୍ୟା ଧମକକୁ ମୁଁ କେବେ ଡ଼ରିନି । ଆଜି ଯଦି ମୁଁ ମରିଯାଏ କାଲି ଏ ସହରରେ ଶହ ଶହ ସୁର ସୃଷ୍ଟି ହେବେ--କିନ୍ତୁ ଶ୍ରମିକ ମାନଙ୍କ ଭିତରୁ ଜଣେ ହେଇ ତୁ' ସେମାନଙ୍କର ଯୋଉ କ୍ଷତି କରିଛୁ ସେଥିପାଇଁ ତତେ ଜଣେ ମଧ୍ୟ କ୍ଷମା ଦେଇ ପାରିବ ନାହିଁ...ଏଇ ଫାର୍ମହାଉସ୍ ଖୁମ୍ବରେ ମୁଁ ତତେ ବର୍ତ୍ତମାନ ବାନ୍ଧିବି ।

ସୁବ୍ରତ ।। କ'ଣ କହିଲୁ ଶଳା ମାଷ୍ଟ ପୁଅ ? ବି. ଏ. ଫେଲ୍‌ହେଇ ତୁ' ଏ ଶ୍ରମିକ ବସ୍ତିରେ ନେତା ହେଇଯିବୁ, ଆଉ ତତେ ମୁଁ ଏଇଠି ହିରୋ ହେବାକୁ ଛାଡ଼ିଦେବି ?

ସୁର ।। ଆରେ ମାଷ୍ଟର ପୁଅ ବୋଲି ଏ ସାହସ ମୋର ଅଛି । ଶାଗ ପଖାଳ ଖାଇ ବଢ଼ିଚି ବୋଲି ବାସ୍ତବତାକୁ ମୁଁ ପଖାଳ କଂସାରେ ପ୍ରତିଫଳିତ ହେବା

ଦେଖିଚି । ତୋ' ଭଳି ଡ଼ାଇରେକ୍ଟର ସ୍ତ୍ରୀର ଅଇଁଠା କୁକୁଡ଼ା ହାଡ଼ ଆଉ ଦାନରେ ଦିଆ ଯାଇଥିବା ମଦକୁ ପେଟରେ ପୂରେଇ ମୁଁ ଶ୍ରମିକମାନଙ୍କର ସର୍ବନାଶ କରିବି...ତେଣୁ ଛବିକୁ ଛାଡ଼ି ଦେ' ! ଭଲରେ ଭଲରେ କହୁଚି ଛାଡ଼ି ଦେ' !

ସୁବ୍ରତ ।। କ୍ଷମା ଛାଡ଼ିବିନି !

ସୁର ।। ସୁବ୍ରତ ! ମୁଁ ତୋ'ର ତଣ୍ଟି ଚିପି ଦେବି କହୁଚି ! ଛାଡ୍ ଛବିକୁ !

ସୁବ୍ରତ ।। ଦେଖି—ଚିପିଲୁ ଦେଖି—ଶାଗ ପଖାଳ ଆଉ ହ୍ୱିସ୍କି ଚିକେନ୍‌ର ଲଢ଼େଇଟା ପୁଣି ଦେଖିବା ଗସ୍‌କାଲ୍ !

[ ସୁର ଝାମ୍ପି ପଡ଼ିଛି ସୁବ୍ରତ ଉପରକୁ ଏବଂ ଭୟଙ୍କର ଭାବରେ ଗଡ଼ାଗଡ଼ି ଫାଇଟିଙ୍ଗ୍ କିଛି ସମୟ ଧରି ଚାଲିବ । ତା' ମଝିରେ ଛବି ମଧ ମାରିବ ସୁବ୍ରତକୁ ଏବଂ ସୁବ୍ରତ ଛତ୍ରଭଙ୍ଗ ଦେବାକୁ ବାଧ ହେବ । ଗଲ ପୂର୍ବରୁ କହିବ ]

ସୁବ୍ରତ ।। ଏକାମାଘରେ ଶୀତ ଯାଏନା ଅଧ୍ୟାପକ ପୁଅ । ଛବିକୁ ଛଡ଼େଇ ନେଇ ଆଜି ଯୋଉ ଇଟାମାଡ଼ କରିଚୁ ମୋ' ଇଜ୍ଜତ ଉପରେ, ତା'ର ଜବାବ୍ ମୁଁ ଦେବି ପଥର ମାରି । ଅପେକ୍ଷା କର ବେଟା !

[ ସୁବ୍ରତ ଚାଲିଗଲା ]

ସୁର ।। ଆରେ ଯା—ଯା—ଜୟଚନ୍ଦ୍ର ! ପୃଥ୍ୱୀରାଜକୁ ମାରି ଭାରତବର୍ଷକୁ ପୁଣି ଥରେ ପରାଧୀନ କରିବା ପାଇଁ ତୁ' ଚେଷ୍ଟା କରିବୁ ବୋଲି ମୁଁ ଜାଣିଚି... ଜାଣିଚି ତୁ' ସେ ସଞ୍ଜୟ ଦାସବର୍ମା ଆଉ ତା'ର ସ୍ତ୍ରୀକୁ ଧରି ଶ୍ରମିକମାନଙ୍କର ପେଟରୁ ଭାତ ମୁଠାକ କାଟିନବୁ, ଆଉ ମନ୍ତ୍ରୀ ପାଖରେ ଦେଖେଇବୁ ଶ୍ରମିକ ନେତା...ମୁହଁରେ ଲାଲସୂର୍ଯ୍ୟର କଥା କହିବୁ ଆଉ ଦେଖେଇଲା ବେଳେ ଦେଖେଇବୁ ଗୋଟେ ବିଦେଶୀ ଟର୍ଚ୍ଚ ଲାଇଟ ! ଏଇ ମୁଖାର ବିପ୍ଲବରେ ନିଆଁ ଜଳିବ ନାଇଁ ସୁବ୍ରତ...ମନିକା ମାଡ଼ାମ୍‌ର ମଦରେ ତୋ'ର ପେଟ ଜଳିଯିବ !

ଛବି ।। ସୁରଭାଇ !

ସୁର ।। ମରି ଯାଇଚି ତୋ'ର ସୁରଭାଇ !

ଛବି ।। କ'ଣ କହୁଚ ତମେ ସୁରଭାଇ ? ଜାଣିଚ...ଏ ଧର୍ମଘଟ କରି ତମର ଛୋଟଭାଇ ବାବୁ ମରିଗଲା ?

( ଅବହ ସଙ୍ଗୀତ କରୁଣ )

ସ୍ୱର ।। ଜାଣିଚି ରୁବି ! ମୋ’ ଗ୍ରେଟ ନିଷ୍ପାପ ଭାଇକୁ ମାରିଦେଇଚି ତୋ’ର ବାପା…ଆଇ. ଏ. ଏସ୍ ଅଫିସର ସଞ୍ଜୟ ଦାସବର୍ମା !

ରୁବି ।। ଜାଣିଚ, ଏ ଦୁଃସମୟର ଶିକାର ହେଇ ତମ ବାପା ନିଶିକାନ୍ତ ସାର୍ ପାଗଳ ହେଇଯାଇଛନ୍ତି ?

ସ୍ୱର ।। ଜାଣେ ! ଆହୁରି ମଧ୍ୟ ଜାଣିଲି ମୋ’ର ଶ୍ରମିକ ଧର୍ମଘଟକୁ ଭାଂଗିଦବା ପାଇଁ ମା’ ତୋ’ର ତୋ’ଭଳି ନିଷ୍ପାପ ଝିଅଟାକୁ ସୁବ୍ରତ ନାମକ ଏଇ ଚିତାବାଘଟା ହାତରେ ଟୋକି ଦେଇଛନ୍ତି ଧର୍ଷିତା ହେବାକୁ । ଶୋଷଣର ଶେଷପରିଣତି ଏମିତି ଗୋଟାଏ ଧର୍ଷଣରେ ଶେଷ ହବ ବୋଲି ମୁଁ ଜାଣିନଥିଲି ରୁବି !

ରୁବି ।। କ’ଣ ତମେ କହିବାକୁ ଚାହୁଁଚ ସ୍ୱରଭାଇ ? ମୋ’ ମା’ର instruc-tionରେ ଏ ସୁବ୍ରତ ଟୋକା ମତେ ଧର୍ଷଣ କରି ଦେଲା ଆଉ ତା’ ସାଂଗରେ ମୋର ସିଲ୍ ମାର ସତୀତ୍ୱଟା ନଷ୍ଟ ହୋଇଗଲା— ସେଇଥିପାଇଁ ତମେ ମୋ’ଠୁ ଦୂରେଇ ରହିବ— ବାହାହବନି-ଇତ୍ୟାଦି ଇତ୍ୟାଦି-ଏୟାତ ।

ସ୍ୱର ।। କ’ଣ କରିବି ରୁବି… ମୁଁ ଗୋଟେ ନିମ୍ନ ମଧ୍ୟବିତ୍ତ ଫ୍ୟାମିଲିର ଶ୍ରମିକ ! ଆଉ ମୋ’ ବାପା ନିଶିକାନ୍ତ ଦାସ ତୋ’ ସାନଭାଇ ରଜାର ଗୃହ ଶ୍ରମିକ । ସେଇଥିପାଇଁ ଆମ ମନ ଭିତରେ ଏଇ ପୁରୁଣା କାଳିଆ ସତୀତ୍ୱର ଆଇଡ଼ିଆ ଗୁଡ଼ାକ ଅଜନ୍ଧୁ ଭଳି ଜମାଟ ବାନ୍ଧି ରହିଛି । ସବୁ ଉନବିଂଶ ଶତାବ୍ଦୀର ଆଇଡ଼ିଆ !

ରୁବି ।। ନାଇଁ ନାଇଁ…ତମେ ଯୋଉ ଧର୍ମଘଟ କଲ ଆଉ ତା’ରି ଭିତରେ ସାନଭାଇକୁ ମାରି ବାପାଙ୍କୁ ପାଗଳ କଲ, ତାରି ଭିତରେ ତାରି ଭିତରେ…ତମେ କମ୍ୟୁନିଷ୍ଟ ହୋଇଯାଇଚ…ଆଉ ତମର ଗୁରୁ କାର୍ଲ ମାର୍କସ୍ ଉନବିଂଶ ଶତାବ୍ଦୀର ଆଇଡ଼ିଆ ସବୁ ତମ ମୁଣ୍ଡରେ ପୁରେଇଛନ୍ତି ।

ସ୍ୱର ।। ସେଥିପାଇଁ ମୁଁ କ୍ଷମା ମାଗିନଉଚି ମାଡ଼ାମ୍ ! ଏଷ୍ଟାଇକ୍ ଚାଲିଲା ବେଳେ ତୋ’ ବାପି ଆଉ ମା’ ଆମ ଫ୍ୟାମିଲୀକୁ ଯେତିକି ବରବାଦ କରିଛନ୍ତି, ତା’ଠୁ ମୁଁ ତତେ ବେଶୀ ନେଗ୍‌ଲେକ୍‌ଟ୍ କରିଚି ଆଉ ବେଶି ହଇରଣ କରିଚି ! ସେଇଥିପାଇଁ କ୍ଷମା ମାଗି ନଉଚି ।

ରୁବି ।। ମୁଁ ବି ଅତ୍ୟନ୍ତ ଉଦାର ହେଇ ତମକୁ କ୍ଷମା କଲି କିଂତୁ ଶାସ୍ତି ଦେବା-ପାଇଁ ତମକୁ ଆଜି ଏଇଠି ବନ୍ଦୀ ହେଇ ରହିବାକୁ ପଡ଼ିବ ତମ ରୁବି ସାଙ୍ଗରେ ।

[ ରୁବି ସ୍ୱରକୁ ଆଲିଙ୍ଗନ କଲା ଏବଂ ସ୍ୱର ହାତ ଯୋଡ଼ି ଭଗବାନଙ୍କ ଉଦ୍ଦେଶ୍ୟରେ କହିଲା ]

ପୁର ।। ହେ ଭଗବାନ ! କାର୍ଲମାକ୍ସ୍‌ଙ୍କ କଥା ମାନି ମୁଁ ତମକୁ ପୁରା ବୈଜ୍ଞାନିକ ପଦ୍ଧତିରେ ପଛଦ୍ୱାର ଦେଇ ବିଦା କରି ଦେଇଥିଲି । ଆଜି କିନ୍ତୁ ରୁବିକୁ ପାଇଲା ପରେ ପୁଣିଥରେ ତମକୁ ଡ଼ାକିବାକୁ ଇଚ୍ଛା ହଉଚି । କାହିଁକି ଜାଣିଚ ଭଗବାନ ? ଯା'ର ଝିଅ ରୁବି ଏତେ ଉଦାର ତା'ର ମା' ମନିକାଦେବୀ କେମିତି ଏତେ ତଳକୁ ଖସି ଯାଇ ପାରିଲେ ଯେ ସୁବ୍ରତ ଭଳିଆ ମଦୁଆକୁ ନେଇ ଏଇ ଫାର୍ମ ହାଉସ୍‌ରେ ଗର୍ଭ ଯାପନ କଲେ ? ତା' ହେଲେ ଏ ଝିଅଟା ପଙ୍କ ଭିତରେ ଫୁଟିଥିବା ପଦ୍ମଟିଏ ! ଯଦି ତା' ହୁଏ, ତା' ହେଲେ ଏ ପଦ୍ମଟାକୁ ସବୁ ବେଳେ ସତେଜ କରି ରଖିଥାଅ ଭଗବାନ ! ତମକୁ ମୋ'ର ଏତିକି ପ୍ରାର୍ଥନା ।

[ ଆଲୋକ ସ୍ତିମିତ ହୋଇ ଅନ୍ଧାର ହେଲା । ପୁନର୍ବାର ଆଲୋକ ଆସିଲା ମଂଚର ଡ଼ାହାଣ ପଟେ ଅର୍ଥାତ୍ ଅଧ୍ୟାପକ ନିଶିକାନ୍ତଙ୍କ ଘରେ । ଆଲୋକ ଆସିବା ମାତ୍ରେ ଅଧ୍ୟାପକ ନିଶିକାନ୍ତ ଅର୍ଦ୍ଧପାଗଳ ଏବଂ ଉନ୍ମାଦ ଅବସ୍ଥାରେ ଘରେ ଆସି ପହଂଚିଛନ୍ତି ପଛପଟୁ । ]

ନିଶିକାନ୍ତ ।। ଉମା ! ଉମାରାଣୀ ! ଶୁଣୁଛ ଉମାରାଣୀ ! ଆଜି ମୋର ଚିତ୍କାର କରିବାର ଦିନ......ଆଜି ମୋର ଆନନ୍ଦ ଉଲ୍ଲାସରେ ପାଗଳ ହେଇଯିବାର ଦିନ...... କାହିଁକି ଜାଣିଛ ? ଜାଣିଛ ଉମା ? ଭାରତ ପୁଣିଥରେ ସ୍ୱାଧୀନ ହେଇଗଲା, ଥରେ ସ୍ୱାଧୀନ ହେଇଥିଲା ୧୯୪୭ ମସିହା ଅଗଷ୍ଟ ପନ୍ଦର ଦିନ ! ଶୁଣୁଛ ଉମା ? ମୋର କି ଜେନେରାଲ୍ ନଲେଜ୍ ଜ୍ଞାନ ଶୁଣୁଚ ଉମା ? ଭାରତ ଥରେ ସ୍ୱାଧୀନ ହେଇଥିଲା ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ । ଅଥଚ କେହି ଜାଣିପାରିଲେ ନାହିଁ । ଖାଲି ଯୋଉମାନେ ଗୋଟାଏ ଖୁବ୍ ମୋଟା GK ବହି ପଢି ଏ'କଥାଟା ଘୋଷି ପକେଇଲେ, ସେମାନେ ହିଁ ଜାଣିଲେ ଭାରତ ସ୍ୱାଧୀନ ହେଇଚି ବୋଲି । ଆଉ ଏ କଥାକୁ ଘୋଷି ସେମାନେ ସମସ୍ତେ ଆଇ.ଏ.ଏସ୍. ପାଇଗଲେ । ଆନର ସ୍କୁଇସ୍‌ଗେଟ୍ ଖୋଲି ଗଲା ସେମାନଙ୍କର, ପେଟ ବଢ଼ିଲା, ଚର୍ବି ହେଲା, ନିଶ ଦାଢ଼ି ପ୍ରତିଦିନ ସକାଳୁ କଟା ହେଲା, ତାଙ୍କୁ ଚିକ୍‌କଣ ସ୍ତ୍ରୀ ମାନେ ମିଳିଲେ ଆଉ ସେମାନେ ଖବର କାଗଜ ପଢ଼ି ପଢ଼ି ଇଣ୍ଟେଲେକ୍‌ଚୁଆଲ୍ ହେଇଗଲେ ଏ ଦେଶକୁ ଶାସନ କରିବା ପାଇଁ !

[ ପ୍ରବେଶ କଲେ ଉମା ]

ଉମା ।। (ଆଶ୍ଚର୍ଯାନ୍ୱିତା ହେଇ) କାହା ସାଙ୍ଗରେ କଥାବାର୍ତ୍ତା କରୁଚ ?

ନିଶିକାନ୍ତ ।। ତମ ସାଙ୍ଗରେ କଥାବାର୍ତ୍ତା କରୁଛି । ଜାଣିଚ ଆଜି ମୁଁ ସ୍ୱାଧୀନ ଭାରତ ସଂପର୍କରେ କହିବି ।

ଉମା ।। ତମ ଚାକିରି ଯିବା ଦିନଠୁ ତମେ ଏମିତି ବକ୍‌ବକ୍ ହଉଚ !

ନିଶିକାନ୍ତ ।। ବକବକ୍ ଆଉ ବକ୍‌ବାସ୍ କରି କରି ସେ ଗୁଡ଼ା ଆଇ. ଏ. ଏସ୍. ହେଇ-ଗଲେ ଉମା ! ଆଉ ଆଇ. ଏ. ଏସ୍. ହେଲାପରେ ପ୍ରଥମେ ଏ ଦେଶର ଶିକ୍ଷାବିତ୍ ମାନଙ୍କ ପ୍ରତି ସେମାନଙ୍କର ଈର୍ଷା ହେଲା । ତେଣୁ ଗ୍ରାମାଞ୍ଚଳର ପ୍ରତି ମାଇନର ସ୍କୁଲକୁ ଏମାନେ ନଷ୍ଟ କଲେ । ନଷ୍ଟ କଲେ ଏ ଦେଶର ଶିକ୍ଷା ବ୍ୟବସ୍ଥାକୁ । ମାଷ୍ଟରମାନଙ୍କୁ ସ୍କୁଲ ଦେଲେ, ବହି ଦେଲେ ନାହିଁ । ଛାତ୍ର ଦେଲେ ନାହିଁ । ରେଡ଼ିଓ ଦେଲେ, ଛାତ ପକାଇଲେ ନାହିଁ । ତା'ପରେ କହିଲେ ମାଷ୍ଟରମାନେ ଗରିଗୋଡ଼ିଆ ମେଣ୍ଢା ଆଉ ସେମାନେ ନିଜେ ଗୋଟେ ଗୋଟେ ଘୋଡ଼ା । ତା'ପରେ ସେମାନେ ନଷ୍ଟ କଲେ ହାଇସ୍କୁଲ ଗୁଡ଼ାକୁ । କାହିଁକି ଜାଣିଚ ? ହାଇସ୍କୁଲ ମାଷ୍ଟର ସେମାନଙ୍କୁ ପିଲାଦିନେ ବାଡ଼େଇ ବାଡ଼େଇ ଇଂରେଜୀ ବ୍ୟାକରଣ ଶିଖେଇଥିଲେ ଆଉ ସେମାନେ IAS ପାଇଲା ପରେ ମଧ୍ୟ ସେମାନଙ୍କୁ "ତୁ'-ତା'" କରି ଡାକିବା ଦ୍ୱାରା ସେମାନଙ୍କର ପ୍ରେଷ୍ଟିଜ୍ ଚାଲିଗଲା...ତା'ପରେ ସେମାନେ ବର୍ତ୍ତମାନ କଲେଜମାନଙ୍କୁ ନଷ୍ଟ କରିବାକୁ ଆସିଲେଣି, ବର୍ତ୍ତମାନ ସେମାନେ ମୋ' ଭଳି ଅଧ୍ୟାପକ ମାନଙ୍କ ଚାକିରି ନେଇ ଭାରତବର୍ଷକୁ ସ୍ୱାଧୀନ କରିବେ । କାହିଁକି ଜାଣିଚ...ଅଧ୍ୟାପକମାନେ GK ବହି ଘୋଷି ନାହାନ୍ତି । ପାଠ ପଢ଼ିଛନ୍ତି । ସେଇଟା ସେମାନଙ୍କ ପାଇଁ ବିପଦ !

ଉମା ।। ମୁଁ ପଚାରୁଚି ତମେ କାହାକୁ ଏ ଭାଷଣ ଦଉଚ ?

ନିଶିକାନ୍ତ ।। ଏ ପୃଥିବୀର ଜେନେରାଲ୍ କ୍ଲାସ୍ ଆରମ୍ଭ ହେଇଗଲାଣି ଉମା ! ସେମାନେ ମୋର ଚାକିରି ନେଇପରେ ସମଗ୍ର ପୃଥିବୀ ମୋର ଜେନେରାଲ କ୍ଲାସ୍ ହେଇଗଲା । ବିନା ପଇସାରେ ମୁଁ ଭାଷଣ ଦେଇ ଚାଲିବି । ଆଜୁ ଭାରତ ଉପରେ ଭାଷଣ ଦେଲେ ବି ମତେ ଗୋଟାଏ ପିରିଅଡ଼୍ କହିବାକୁ ପଡ଼ିବ... ସବୁ ବିଷୟରେ ଟିକିଏ ଟିକିଏ ଜାଣିପକେଇବା ଲୋକଟାର ନାଁ ଆଇ. ଏ. ଏସ୍. ଅଫିସର ଆଉ ସ୍ୱାଧୀନ ଭାରତରେ ପାଠପଢ଼ି ସତ କହୁଥିବା ଲୋକଙ୍କର ଚାକିରି ଯାଉଛି । ହେଲେ ଆଜି କ'ଣ ହେଇଚି ଜାଣିଚ ? ଭାରତବର୍ଷ ପୁଣିଥରେ ସ୍ୱାଧୀନ ହେଇଯାଇଛି ।

ଉମା ।। ପୁଣିଥରେ କ'ଣ ସ୍ୱାଧୀନ ହେଇଯାଇଛି ? ତମ ମୁଣ୍ଡ ଖରାପ ହେଇଗଲାଣି !

ନିଶିକାନ୍ତ ।। ବୁରୋକ୍ରାଟ୍‌ମାନେ ସେମିତି କୁହନ୍ତି ଉମା । ଜଣେ ସମ୍ମାନୀୟ ଅଧ୍ୟାପକର ସ୍ତ୍ରୀ ହୋଇ ମୋ' ଚେହେରା ଆଉ ମୁହଁର ଦାଢ଼ିକୁ ଦେଖି ତମେ କହୁଚ ଭରତ ସ୍ୱାଧୀନ ହେଇଗଲା ବୋଲି ?

ନିଶିକାନ୍ତ ।। ଖବର କାଗଜରେ ବାହାରିଚି ଉମା । ପ୍ରତି ଦଶ ବର୍ଷରେ ଥରେ ଏ ଦେଶକୁ ସ୍ୱାଧୀନ କରିବାକୁ ପଡ଼ିବ । ୧୯୪୭ରୁ ୧୯୬୭ ଭିତରେ ଦେଶ ଦୁଇଥର ସ୍ୱାଧୀନ ହେବା କଥା ।

ଉମା ।। ସେଇକଥା ଖବର କାଗଜରେ ବାହାରିଚି ଆଜି !

ନିଶିକାନ୍ତ ।। ଖବର କାଗଜରେ ବାହାରିଚି...(ଖୋଲି ପଢ଼ିଲେ) ସଂଭ୍ରାନ୍ତ ଆଇ. ଏ. ଏସ୍. ଅଫିସର ସଞ୍ଜୟ ଦାସବର୍ମାଙ୍କ ସ୍ତ୍ରୀ ମୋନିକା ଦେବୀଙ୍କୁ ନନ୍ଦନ କାନନରେ ଗଣ ଧର୍ଷଣ କରଯାଇ ହତ୍ୟା କରଯାଇଚି । ପୋଲିସ୍ ପ୍ରସିଦ୍ଧ ବ୍ୟବସାୟୀ ବିଜୟ ମହାନ୍ତିଙ୍କୁ ଗିରଫ କରିଛନ୍ତି । କିନ୍ତୁ ସୂତାକଳର ଶ୍ରମିକ ନେତା ସୁବ୍ରତ ମହାନ୍ତି ଓ ତାଙ୍କ ବନ୍ଧୁମାନେ ବିଜୟ ମହାନ୍ତିଙ୍କ ସହିତ ଅର୍ଦ୍ଧନଗ୍ନ ମନିକାଙ୍କୁ ନନ୍ଦନକାନନରେ ପଡ଼ିଥିବା ଦେଖି ପିକ୍‌ନିକ୍‌ର ମାଂସ ଭୋଜୀ ପରି ଡ଼ିରେକ୍ଟରଙ୍କ ସ୍ତ୍ରୀକୁ ଖାଇଗଲେ ବୋଲି ସ୍ଥାନୀୟ ଲୋକେ କହୁଛନ୍ତି । ପୋଲିସ୍ ଓ କ୍ରାଇମ୍‌ବ୍ରାଞ୍ଚ ଏହାର ତଦନ୍ତ କରୁଛନ୍ତି !

ଉମା ।। ଏ' ମା ! ଏ ଗୁଡ଼ା କି ଯୁଗ ହେଲାଣି !

ନିଶିକାନ୍ତ ।। (ଖୁବ୍ ଜୋରରେ ହସିଲେ)

ଉମା ।। ଏଗୁଡ଼ା କ'ଣ ହସିବା କଥା ?

ନିଶିକାନ୍ତ ।। କାହିଁକି ମନିକାଟା କ'ଣ ଭରତ ମାତା ? ତମକୁ ଏତେ ବାଧୁଚି କାହିଁକି ? ଏ ଦେଶରେ ଭରତ ମାତାକୁ ଗଣଧର୍ଷଣ କଲେ ଯାଇ ସ୍ୱାଧୀନତା ମିଳେ ବୋଲି ଜାଣିନା ? ଆମେ ଯୋଉମାନେ ସ୍ୱାଧୀନତାର ସତୀତ୍ୱକୁ ଖଦଡ଼ ଘୁଦର ଭିତରେ ଘୋଡ଼େଇ ରଖିଥିଲୁ, ଆମକୁ ଦେଖି ପୁରୁଣାକାଳିଆ ବୋଲି ସମସ୍ତେ ହସିଲେ । ସେଥିପାଇଁ ଆଜି ମୁଁ ସୁବ୍ରତ ଆଉ ତା'ର ସାଙ୍ଗମାନଙ୍କୁ ହିରୋ ବୋଲି କହିବି । ମନିକା ପରି ସ୍ୱାଧୀନ ଭରତର ପରାଧୀନ ମହିଳାମାନଙ୍କୁ ଏମିତି ସ୍ୱାଧୀନ କରିବା ଉଚିତ !

ଉମା ।। ତମେ ପାଗଳ ହେଇଯାଇଚ...ନହେଲେ ପାଠ ଶାଠ ପଢ଼ିଥିବା ମହିଳା ମାନଙ୍କୁ ତମେ ଏମିତି ଘୃଣା କାହିଁକି କରୁଛ ?

ନିଶିକାନ୍ତ ।। ପାଠ ଶାଠ ପଢ଼ିଥିବା ମହିଳାମାନଙ୍କୁ ଘୃଣା କରୁନାହିଁ ଉମା ! ଘୃଣା କରୁଚି ଉପନିବେଶୀୟ ମନୋଭାବ ଥିବା ଇଂରଜୀ ପାଦଚଟା ମହିଳା ମାନଙ୍କୁ । ମରିଯାଇଥିବା ମନିକା ମାନଙ୍କୁ—ଯୋଉମାନେ ଅଗଷ୍ଟ ଚଉଦ

ତାରିଖ ଗତିରେ ଧର୍ଷଣ ହେଇ ମରନ୍ତି, ଆଉ ପନ୍ଦର ଅଗଷ୍ଟ ସକାଳୁ ଏକ ବିରାଟ ଶୋଭଯାତ୍ରାରେ ତାଙ୍କ ଧର୍ଷଣ ଦେହକୁ କାରଖାନାର ଶ୍ରମିକ ମାନେ ବିରଟ ଶୋଭଯାତ୍ରାରେ ରାଜରାସ୍ତା ଉପରେ ନିଅନ୍ତି ।

ଉମା ॥ ସେଇଟାକୁ ଦେଖି ତମେ ଭାରତବର୍ଷକୁ ଆଉଥରେ ସ୍ୱାଧୀନତା ଦଉଚ ?

ନିଶିକାନ୍ତ ॥ ମୁଁ ଭାବୁଚି ପ୍ରତି ଦଶବର୍ଷରେ ଆମକୁ ଅର୍ଥନୈତିକ ସ୍ୱାଧୀନତା ମିଳୁ । ମୂଲ୍ୟବୋଧ ଭିତ୍ତିକ ସ୍ୱାଧୀନତା ମିଳୁ...ଭାରତବର୍ଷକୁ ଭଲ ପାଇବାର ସ୍ୱାଧୀନତା ମିଳୁ...ୟୁରୋପକୁ ଅନୁକରଣ ନକରି ଆମର ପୁରାଣ ଉପନିଷଦକୁ ଭଲ ପାଇବାର ସ୍ୱାଧୀନତା ମିଳୁ .. !

ଉମା ॥ କିନ୍ତୁ ମନିକାକୁ ଧର୍ଷଣ କରାଗଲେ ଭାରତ କେମିତି ସ୍ୱାଧୀନ ହଉଚି .. ବିଚାରୀ ଏ ପୃଥିବୀରୁ ବିଦାୟ ନେଇ ଚାଲିଗଲା !

ନିଶିକାନ୍ତ ॥ No emotion ଉମା ! ସାବଧାନ emotional drama କରି ତମେ ମନିକା ପାଇଁ "ହେ ପୃଥିବୀ ବିଦାୟ" ବୋଲି ଗୀତ ଲେଖି ପାରିବ ନାହିଁ । ଗାନ୍ଧୀ ଆଉ ନେହେରୁଙ୍କ ଯୁଗ ଚାଲିଗଲା । ଏଇଟା ଭିଏତନାମ୍ ଆଉ ବର୍ଣ୍ଣବିଦ୍ୱେଶର ଯୁଦ୍ଧ ସମୟ । ଏଇଟା IAS ପାଓ୍ୱାର୍ ଆଉ ପ୍ରକୃତ ଶିକ୍ଷକ ଭିତରେ ଚାଲିଥିବା ସ୍ୱାଧୀନ ଭାରତରେ ଯୁଦ୍ଧ । ଗୋଟାଏ ପଟେ ସେମାନେ ଷଷ୍ଠଦଶକର ଏଇ ନେତାମାନଙ୍କୁ ବୋକା ବନେଇ ନିଜ ଇଂରେଜ ଶାସକର ସ୍ଥାନ ଅଧିକାର କରୁଛନ୍ତି ଆଉ ଅନ୍ୟ ଗୋଟାଏ ପଟେ, ଆମେ ବଢେ ନିସ୍ପୃହ ମୂଲ୍ୟବୋଧକୁ ଢାବୁଡ଼ି ଧରିଥିବା ଲୋକ, ଭୋକ ଉପାସରେ ଜୀଇଁରହି ଗାନ୍ଧୀବାଦର ଅହିଂସା ମଶାଲ ଧରି ବୁଲୁଛୁ ରାଜରାସ୍ତା ଉପରେ । ମୁହଁରେ ଦାଢ଼ି... ସାନ ପୁଅ ଔଷଧ ନଖାଇ ମରିବ ...ବଡ଼ ପୁଅକୁ କାରଖାନାରୁ ଛଟେଇ କରହବ...ଆମକୁ ଗାଡ଼ି ଚଢ଼ୁଥିବା ଲୋକେ ପାଗଳ ବୋଲି କହିବେ...ତଥାପି ଆମେ ବଂଚିବୁ । ଏ ଦେଶର ପ୍ରତିଟି ସଞ୍ଜୟ ଦାସବର୍ମା ଆଉ ମନିକାର ମୃତ୍ୟୁ ଏମିତି ଜଘନ୍ୟ ହେବାକୁ ବାଧ୍ୟ । ଆଉ ଯଦି ସେମାନଙ୍କୁ ତମେ ପୃଥିବୀରୁ ବିଦାୟ ଦେବା ପାଇଁ ଲୁହ ଗଡ଼େଇବ, ତା'ହେଲେ (ବ୍ୟାଗ୍‌ରୁ ତ୍ରିରଙ୍ଗା ଝଂଡ଼ା ବାହାର କରି) ଏଇ ତ୍ରିରଙ୍ଗୀ ପତାକାଟା ନିଅ ଆଉ ଘୋଡ଼େଇ ଦିଅ ଭାରତମାତା ମନିକାର ଉଲଗ୍ନ ଦେହରେ । ନିଅ...ନିଅ ଉମା ! ଯାଅ...ମନିକାର ଚିତା ପାଖରେ ଠିଆହୋଇ 'ହେ ପୃଥିବୀ ବିଦାୟ' ଗୀତଟା ଗାଅ...ତମ ପୁଅ ସୁର ପରା ଲେଖିଥିଲା, ନିଅ...ଏ ପତାକା ! ଯାଅ ମନିକାର ମଶାଣିକୁ...!!

[ ନିଶିକାନ୍ତ ଓ ଉମା ପ୍ରାୟ ଫ୍ରିଜ୍ ହୋଇ ରହିଗଲେ ମଞ୍ଚର ଡାହାଣ ପଟେ । ପଛପଟ ଦରଜା ପଟୁ ପ୍ରବେଶ କଲେ ସ୍ବର ଓ ରୁବି । ଉଭୟଙ୍କ ବେକରେ ଫୁଲମାଳ । ନିଶିକାନ୍ତ କହି ଚାଲିଥାନ୍ତି ]

ନିଶିକାନ୍ତ ।। ଯିବନି ? ଲଜ୍ଜ ମାଡ଼ିବ ବୋଲି ଯିବନି ନା ମୁଁ ପାଗଳ ହୋଇ ଯାଇଚି ଭବି ଯିବନି ? ତମକୁ ତା'ହେଲେ ମାନିବାକୁ ପଡ଼ିବ ଆଜିର ସ୍ୱାଧୀନ ଭାରତରେ ଧର୍ଷଣ ହିଁ ସ୍ୱାଧୀନତାର ଅନ୍ୟନାମ । ବ୍ୟକ୍ତିର ଚୌକୀ ଲଢସାଟା କ୍ରମଶଃ ଜଙ୍ଗଲ ଭଳି ଅରମା ହେଇଗଲେ ଯାଇ ସ୍ୱାଧୀନତା ଆସେ ଗଣତନ୍ତ୍ରର ମଶାଣି ପଦାରେ । ମାନିବାକୁ ପଡ଼ିବ ଉମା ମଣିକା ପରି ଅଯୋଗ୍ୟା ଭାରତମାତା ମାନଙ୍କୁ ଧର୍ଷଣ କଲେ ହିଁ ସ୍ୱାଧୀନତା ନାମକ ଗୋଟେ ରବର କଣ୍ଢେଇ ଜନ୍ମ ହବ ଆଉ ପ୍ରତି ଅଗଷ୍ଟ ପନ୍ଦର ଦିନ ଆମେ ତାକୁ ପ୍ୟାରେଡ୍ ପଡ଼ିଆରେ କବିରଜୀ ଔଷଧ ଦେଇ ଜୀବନ୍ୟାସ ଦବାକୁ ଚେଷ୍ଟା କରିବା !

[ ପ୍ରବେଶ କରିଚି ସ୍ବର । ସାଙ୍ଗରେ ରୁବି ]

ସ୍ବର ।। ତା'ପରେ ବାବା ! ଜନ୍ମ ହେବୁ ଆମେ । ତମ ଗାନ୍ଧୀ ନେହରୁଙ୍କ ଜମାନାର ପରବର୍ତ୍ତୀ ପୀଢ଼ି । ଆମେ ଘୃଣା କରିବୁ ତମର ହିପୋକ୍ରିସୀକୁ ! ମୁହଁରେ ନୀତି କଥାର ମୁଣା ପିନ୍ଧି, ଭିତରେ କରୁଥିବା ସମସ୍ତ କୁକର୍ମକୁ !

ରୁବି ।। ହଁ ସାର୍ ! ଆମେ ଘୃଣା କରିବୁ ସବୁ ଇଂରେଜୀ ମିଡ଼ିଅମ୍‌ରେ ପଢ଼ୁଥିବା ତଥାକଥିତ ସ୍ମାର୍ଟ ବାଷ୍ଟାଡ୍ ମାନଙ୍କୁ । ଯୋଉମାନେ ନିଜକୁ ବୁଦ୍ଧିଜୀବୀ ବୋଲି କହି ଗାଁର ଅଶିକ୍ଷିତ ଚାଷୀଟାକୁ ଘୃଣା କରନ୍ତି । ନିଜେ ସହସ୍ତି ହେବେ ବୋଲି ଚାଷୀ ବାପାକୁ ପିଅନ ପରି ଦେଖନ୍ତି । ନିଜେ IAS ହେଲା ପରେ ଗାଉଁଲୀ ବାପ ମାନଙ୍କୁ କୁକୁର ପରି ଦେଖନ୍ତି !

ନିଶିକାନ୍ତ ।। ଆଉ ସେଇଥି ପାଇଁ ପ୍ରତି ଅଗଷ୍ଟ ପନ୍ଦର ଦିନ ଭାରତ ମାତାକୁ ଆମର ନେତାମାନେ ଧର୍ଷଣ କରନ୍ତି ଆଉ IAS ମାନେ ଆମ ଦେଶର ଭବିଷ୍ୟତ ଅବୈଧ ସନ୍ତାନ ମାନଙ୍କୁ ଚକୋଲେଟ୍ ବାଣ୍ଟନ୍ତି । ଖାଲି ସେଇ କୋଳାହଳ ଭିତରେ ହଜିଯାଏ ନିଶିକାନ୍ତ ମାଷ୍ଟରର ଚିତ୍କାର...ଶେଷକୁ ସିଏ ଭଳେ ଆତ୍ମହତ୍ୟା କରି ମରିବ !

ସ୍ବର ।। ଆମେ ଥାଉ ଥାଉ ତମେ କେମିତି ମରିବ ବାପା ?

ଛବି ।। ଦେଖୁନାହାନ୍ତି ଆପଣଙ୍କ ଛବିକୁ ? ସେପଟେ ମା'ର ଶବ ଯାଉଚି ମଶାଣିକୁ ଆଉ ମୁଁ ସ୍ବର ଭଇକୁ ବାହାହେଇ ଘରକୁ ଫେରୁଚି ।

ଉମା ।। କ'ଣ କହିଲୁ ସ୍ବର ? ତୁ' ଛବିକୁ ବାହାହେଇଚୁ ନା ଜବରଦସ୍ତ...

ରୁବି ।। ସ୍ବର ଭଇ ବିଜୟ ମହାନ୍ତି ନୁହନ୍ତି ବୋଉ ! ତମେ ପ୍ରଥମେ କୁହ ମତେ ଏ ଘରେ ବୋହୂ କରି ଗ୍ରହଣ କରିବ ନା IASର ଝିଅ ବୋଲି କିଗସିନ୍ନା ପକେଇ ଢାଳିଦେବ ? ମୁଁ ପ୍ରସ୍ତୁତ ! ସବୁଥି ପାଇଁ ପ୍ରସ୍ତୁତ ।

ଉମା ।। ତତେ ମୁଁ କିଗସିନ୍ନା ପକେଇ ଢାଳିବି କାହିଁକି ଲୋ ଛବି । ପିଲାଦିନଟା ଏଇ ଘରେ ଝିଅ ହେଇ ବଢ଼ିଚୁ ଆଉ ବଢ଼ିଯାଇ ବୋହୂ ହେଇ ରହିବୁ .. ଏଇଟା ତ ଆନନ୍ଦର କଥା ।

ନିଶିକାନ୍ତ ।। (ପାଗଳ ପରି ହସିଲେ) ଆନନ୍ଦର କଥା ? ଏଁ ! (ହସିଲେ) ତା'ହେଲେ ଏ ତ୍ରିରଙ୍ଗା ପତାକାଟାକୁ ନିଅ ..ଏଇଟାକୁ ପକେଇ ଦିଅ ତମ ପୁଅ ବୋହୂଙ୍କ ଉପରେ...ଆଉ ମୋ' ପରି ଚିତ୍କାର କରି କୁହ—"ହେ ପୃଥିବୀ —ସ୍ବାଗତମ୍ !"

[ ଉମା ସେମାନଙ୍କ ଉପରେ ତ୍ରିରଙ୍ଗୀ ପତାକାଟି ପକେଇ ଫ୍ରିଜ୍ ହେଲେ ଏବଂ ଆବହ ସଙ୍ଗୀତ ରୂପେ ବାଜିଲା ଶାହାନାଇ । ପ୍ରଚ୍ଛଦ ପଟରୁ ହୁଳହୁଳି ମଧ୍ୟ ଶୁଭିଲା ]

—୦—